# ହାତୀ
## ଜଙ୍ଗଲର ରାଜା

ରମେଶ ବେଦୀ



ଅନୁବାଦ
ବିନୟକୃଷ୍ଣ ପଟ୍ଟନାୟକ

Digitized by srujanika@gmail.com

ତରୁଣ ଭାରତୀ

# ହାତୀ
## ଜଙ୍ଗଲର ରାଜା

ରମେଶ ବେଦୀ

ଅନୁବାଦ
ବିନୟକୃଷ୍ଣ ପଟ୍ଟନାୟକ

ଫଟୋଚିତ୍ର
ରାଜେଶ ବେଦୀ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

Digitized by srujanika@gmail.com

# ସୂଚୀପତ୍ର



*Digitized by srujanika@gmail.com*

Digitized by srujanika@gmail.com

# ମୁଖବନ୍ଧ

ହାତୀମାନଙ୍କୁ ପାଖରୁ ଲକ୍ଷ୍ୟ କରିବା ଓ ଏହି ପୁସ୍ତକଟି ପାଇଁ ଉପଯୁକ୍ତ ଫଟୋ ଉଠାଇବା ପାଇଁ ଶ୍ରୀଯୁକ୍ତ ରମେଶ ବେଦୀ ଓ ତାଙ୍କର ଫଟୋଗ୍ରାଫର୍ ପୁଅ ନରେଶ ଓ ରାଜେଶଙ୍କୁ ଜଙ୍ଗଲ ଭିତରେ ବୁଲି ଅସୀମ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି । ସେମାନଙ୍କ ପ୍ରତି ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ଏହି ପୁସ୍ତକର ବିଷୟବସ୍ତୁକୁ ନେଇ ଅନେକ ମୂଲ୍ୟବାନ ପରାମର୍ଶ ଦେଇଥିବାରୁ ମୁଁ ଶ୍ରୀ ବିନୋଦ ଋଷି, ଆଇ. ଏଫ୍. ଏସ୍‌ଙ୍କ ନିକଟରେ ବି କୃତଜ୍ଞ ।

Digitized by srujanika@gmail.com

1

# ଉପକ୍ରମ

ହରିଦ୍ୱାର ପାଖ ଜଙ୍ଗଲରେ  କାମ କରୁଥିବା କାଠ ଓ ବାଉଁଶ କଟାଳୀଙ୍କୁ ଆମେ ଯଦି ପଚାରିବା, ସେମାନେ  କେଉଁ ହିଂସ୍ରଜୀବକୁ ସବୁଠୁ ବେଶି ଭୟ କରନ୍ତି, ସେମାନେ ସାଙ୍ଗେ ସାଙ୍ଗେ କହିବେ – ହାତୀ । ଏହି ଅଞ୍ଚଳରେ ଚିତା, ବାଘ, ବାଦ୍ବହା ଓ ଭାଲୁ ଦେଖିବାକୁ ମିଳନ୍ତି । ସେମାନଙ୍କ  ଉପସ୍ଥିତି ସ୍ଥାନୀୟ ଲୋକଙ୍କୁ ବିଶେଷ ବିବ୍ରତ କରି ନ ଥାଏ । କିନ୍ତୁ ବସତି ପାଖ ଦେଇ ହାତୀ ପଲଟିଏ ଯଦି ଚାଲିଯାଏ, ତେବେ ସେମାନଙ୍କ ଅବସ୍ଥା ବିଗିଡ଼ି ଯାଇଥାଏ, ସେମାନେ କୌଣସି ଜିନିଷକୁ ଛାଡ଼ନ୍ତି ନାହିଁ – କୁଡ଼ିଆକୁ ଟାଣି ତଳେ ଶୁଆଇ ଦିଅନ୍ତି, ଖାଦ୍ୟ ପଦାର୍ଥକୁ ଖାଇ ଦିଅନ୍ତି ଓ ଘରର ବିଭିନ୍ନ ଉପକରଣ ସବୁକୁ ଦଳି ଚକଟି ପକାନ୍ତି ।

କାଶ୍ମୀରର ଗୁଜାର୍ ଜାତିର ଲୋକେ ଏ ବିଷୟରେ ଭଲରୂପେ ଜାଣନ୍ତି । ଏହି ଯାଯାବର ଜାତିର ଲୋକମାନେ କେତେ ଶହ ବର୍ଷ ଧରି ଏହି ଜଙ୍ଗଲରେ ରହି ଆସୁଛନ୍ତି ।



Digitized by srujanika@gmail.com

ମଇଁଷି ଚରାଇବା ପାଇଁ ସେମାନେ ପ୍ରତିଦିନ ନିଜ ଶିବିର ଠାରୁ ଅନେକ ଦୂରକୁ ଚାଲିଯାଇଥାନ୍ତି । ଆଉ, ସେମାନେ ନଥିଲାବେଳେ ହାତୀ ଦଳଟିଏ ଯଦି ତାଙ୍କ ବସତି ପାଖରେ ପହଞ୍ଚିଯାଆନ୍ତି, ତେବେ ତାଙ୍କର ସବୁକିଛି ମାଟିରେ ମିଶିଯାଏ । ଏପରିକି ମଇଁଷି ଛୁଆ ଗୁଡ଼ିକୁ ବି ସେମାନେ ଦଳି ମାରିଦିଅନ୍ତି ।

ମୋର ମନେ ପଡୁଛି, ଉତ୍ତର ପ୍ରଦେଶର କର୍‌ବେଟ୍ ଜାତୀୟ ପାର୍କରେ ଥରେ ଗୋଟିଏ ବାଘକୁ ପ୍ରଲୋଭିତ କରିବା ପାଇଁ ଗୋଟିଏ ମଇଁଷି ଛୁଆକୁ ବନ୍ଧା ଯାଇଥିଲା । କିନ୍ତୁ ଓଲଟା ଭାବେ ସେହି ଜାଗାରେ ଦଳେ ହାତୀ ପହଞ୍ଚିଗଲେ । ଘଞ୍ଚ ଜଙ୍ଗଲର ଗୋଟିଏ ସଫା ଜାଗାରେ ବାଛୁରୀଟିକୁ ଗୋଟିଏ ରସିରେ ବନ୍ଧାଯାଇଥିଲା । ହାତୀମାନେ ସେଠାକୁ ଆସିବା କଥା ବିଚରା ବାଛୁରୀଟି ଜାଣିବା ଆଗରୁ ସେମାନେ ତାକୁ ଶୁଣ୍ଢରେ ଉଠାଇନେଇ ଭୂଇଁରେ ବାଡ଼େଇଦେଲେ ଓ ପାଦରେ ଚକଟି ଦେଲେ ।

ସ୍ୱଭାବ ଦୃଷ୍ଟିରୁ ହାତୀ ଏକ ସୁନ୍ଦର ଓ ଶାନ୍ତିପ୍ରିୟ ଜୀବ । ଗୋଟିଏ ହାତୀ ଦଳରେ ଦଶରୁ ଶହେ ଯାଏଁ ହାତୀ ଥାଆନ୍ତି । ଦଳଟିରେ ଅନେକ ମାଈ ହାତୀ ଥାଆନ୍ତି । ଅଣ୍ଡିରା ହାତୀଙ୍କ ସଂଖ୍ୟା କମ୍ ଥାଏ । ଦଳପତି ଡାକ ଦେଲେ ପୂରା ଦଳଟି ଏକାଠି ହୋଇଯାଇଥାଏ । ଦଳଟି ଖେଳାଇ ହେବାର ଥିଲେ, ଏହାର ସଦସ୍ୟମାନେ ବିଶେଷ କରି ମାଈ ହାତୀମାନେ, ଡରିଯାଆନ୍ତି । *ରାମାୟଣ*ରେ ଏହାର ଅନେକ ଉଦାହରଣ ଦେଖିବାକୁ ମିଳିଥାଏ । ନିୟମ ଦୃଷ୍ଟିରୁ ମାଈ ହାତୀମାନେ ସବୁବେଳେ ଦଳରେ ରହିବା ପାଇଁ ଚେଷ୍ଟା କରନ୍ତି । ଅଣ୍ଡିରା ହାତୀମାନେ ବେଳେ ବେଳେ ଦଳରୁ ଦୂରେଇ ଯାଆନ୍ତି, କିନ୍ତୁ ଅତି ବେଶି ଦୂରକୁ ଯାଆନ୍ତି ନାହିଁ । ଦଳରେ ସବୁଠୁ ବଳୁଆ ଦନ୍ତା ହାତୀଟି ଦଳପତି ବନିଥାଏ । ଅନ୍ୟ କୌଣସି ହାତୀ ତା'ର ନେତୃତ୍ୱକୁ ଆହ୍ୱାନ କଲେ, ଉଭୟଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲେ ଓ ଏହାର ମୀମାଂସା ହୁଏ । ପରାଜିତ ଯୋଦ୍ଧାଟି ଦଳରେ ରହିବାକୁ ଚାହିଁଲେ, ତାକୁ ବିଜୟୀ ହାତୀଟିର ରାଜତ୍ୱକୁ ମାନିବାକୁ ହୁଏ; ନଚେତ୍ ଦଳ ଛାଡ଼ି ତାକୁ ଜଙ୍ଗଲରେ ଏକା ବୁଲିବାକୁ ପଡ଼େ । ଏକା ରହିଲେ ତାକୁ ସବୁବେଳେ ସଜାଗ ରହିବାକୁ ପଡ଼େ ଓ ନିଜକୁ ରକ୍ଷା କରିବାକୁ ପଡ଼େ । ଅବଶ୍ୟ ଏକଲା ଥିବା ପ୍ରତ୍ୟେକ ଅଣ୍ଡିରା ହାତୀ ଯେ ଦଳରୁ ବିତାଡ଼ିତ ହୋଇଥିବ, ଏପରି ଭାବିବା ବି ଠିକ୍ ନୁହେଁ । ଏପରି ହୋଇପାରେ ଯେ, ଗୋଟିଏ ନିର୍ଦ୍ଦିଷ୍ଟ ଏକଲା ଅଣ୍ଡିରା ହାତୀ ଦିନେ ଗୋଟିଏ ବିରାଟ ଦଳର ଦଳପତି ଥିଲା ଓ ସେ ନିଜ ଖିଆଲରୁ ନିର୍ବାସନରେ ରହୁଛି ।

ଏକଲା ଥିବା ଅଣ୍ଡିରା ହାତୀମାନେ ସାଧାରଣତଃ ଜଙ୍ଗଲର ସୀମା ପାଖାପାଖି ରହିଥାନ୍ତି, ଯେପରି ସେମାନେ ପାଖ ଶସ୍ୟକ୍ଷେତ୍ର ଉପରେ ଚଢ଼ାଉ କରିପାରିବେ । ଗହମ, ଚାଉଳ, ଖଜୁରୀ ଗୁଡ଼ ଆଦି ପାଇବା ଆଶାରେ ଏମାନେ ଜନବସତି ପାଖରେ ଚକ୍କର କାଟନ୍ତି । ଘର ବାହାରେ ଯଦି କୌଣସି ପରିବା ବା ଅନ୍ୟ କୌଣସି ଖାଦ୍ୟ ପଦାର୍ଥ ରହିଯାଇଥାଏ, ତେବେ ସକାଳ ବେଳକୁ ତା'ର ଆଉ କୌଣସି ପତ୍ତା ମିଳି ନଥାଏ । ମୁର୍କସନ୍ ପାର୍କରେ ଥରେ ଗୋଟିଏ ହାତୀ ମାତ୍ର ପାଞ୍ଚ ମିନିଟ ମଧ୍ୟରେ 20 କି.ଗ୍ରା. ଆଳୁ ଖାଇ ଦେଇଥିଲା । ତା'ପରେ ରେଞ୍ଜରଙ୍କ ଘର ଝରକା ଦେଇ ସେ ତା' ଶୁଣ୍ଢକୁ ପୂରାଇଲା ଓ

Digitized by srujanika@gmail.com

*ପୋମ୍ବେ* ନାମକ 23 ଲିଟର ଦେଶୀ ମଦ ଏକା ନିଃଶ୍ୱାସରେ ପିଇଦେଲା । ତା' ପରଦିନ ସାରା ସେ ଗୋଟିଏ ଗଛକୁ ଆଉଜି ଶୋଇ ରହିଲା । କୌଣସି ହାତୀର ପାଟିରେ ଥରେ କଦଳୀ, ଆଳୁ, ମକା, ଆଖୁ ବା, ଏପରି କିଛି ସୁଆଦିଆ ଖାଦ୍ୟ ଲାଗିଗଲେ, ତା'କୁ ଆଉ ନିୟନ୍ତ୍ରଣ କରି ହୁଏନାହିଁ । ତା' ପରଠୁ ସେ ଜୀବନ ଓ ସମ୍ପତ୍ତି ପ୍ରତି ଏକ ବିପଦ ହୋଇପଡ଼େ । ଏହି ପଶୁ ଗୁଡ଼ିକୁ ଘଉଡ଼ାଇବା ପାଇଁ ସବୁ ପ୍ରକାରର କୌଶଳ ପ୍ରୟୋଗ କରିବାକୁ ପଡ଼େ । କିନ୍ତୁ ଏହା ସହଜ ହୋଇ ନ ଥାଏ । କାରଣ ମନୁଷ୍ୟ ସହିତ ବାରମ୍ବାର ମୁକାବିଲା ହେତୁ ସେମାନେ ବେଶ୍ ସାହସୀ ଓ ବିପଦଜନକ ଶତ୍ରୁ ବନିଯାଇଥାନ୍ତି । ବେଳେ ବେଳେ ଅଣିରା ହାତୀ ତା' ବାଟରେ କୌଣସି ହତଭାଗ୍ୟ ମଣିଷକୁ ପାଇଲେ ତା'କୁ ଆକ୍ରମଣ କରିଥାଏ । ସେତେବେଳେ ତାକୁ ଏକ ମତ୍ତ ହାତୀ କୁହାଯାଇଥାଏ । ଲୋକେ ଆକ୍ରମଣ କଲେ ବା କୌଣସି ଗୁରୁତର ଆଘାତ ପାଇଲେ ହାତୀଟିଏ ପାଗଳ ପରିକା ହେଇଯାଏ । ଅନେକ ସମୟରେ ଫସଲରୁ ଦୂରେଇ ରଖିବା ପାଇଁ ଲୋକେ ସେମାନଙ୍କ ଉପରକୁ ଗୁଳି ଚଳାଇ ଦେଇଥାନ୍ତି । ଫଳରେ ହାତୀଟି ସାରା ଜୀବନ ଯନ୍ତ୍ରଣା ପାଇଥାଏ । ଏପରି ହାତୀ ପ୍ରତିଶୋଧ ପରାୟଣ ହୋଇ ଯାହାକୁ ତାହାକୁ ମାଡ଼ି ଦେଇପାରନ୍ତି । ବେଳେ ବେଳେ ନିରୀହ ଘାସ କଟାଳୀ, କାଠ କଟାଳୀ ଓ ବାଟୋଇମାନେ ଏମାନଙ୍କ ରାଗର ଶିକାର ହେଇଥାଆନ୍ତି ।

ଏକଦା ଗୋଟିଏ ମତ୍ତ ହାତୀ ତା'ର ଶୁଣ୍ଢରେ ପଥର ଓ କାଠଗଣ୍ଡି ଉଠାଇ ଲୋକଙ୍କ ଉପରକୁ ଫିଙ୍ଗିଥିଲା । ସେ ଏପରିକି ପାଖରେ ଯାଉଥିବା ଯାନବାହନକୁ ବି ଗୋଡ଼ାଇଥିଲା । ମତ୍ତ ହାତୀଙ୍କ ବିଷୟରେ ଜଣାଅଛି ଯେ, ସେମାନେ କୁଆଡ଼େ ରାସ୍ତା ମଝିରେ ଠିଆ ହୋଇ ତାଙ୍କ ଆଡ଼କୁ ଆସୁଥିବା ଗାଡ଼ି ମଟରକୁ ଆକ୍ରମଣ କରନ୍ତି ଓ ଯେତେ ହର୍ଣ୍ଣ ବଜାଇଲେ ବି ରାସ୍ତାରୁ ହଟନ୍ତି ନାହିଁ । ଏପରି ହେଲେ, ହାତୀଟି ଠାରୁ ବେଶ୍ କିଛି ଦୂରରେ ଡ୍ରାଇଭର୍‌ମାନେ ଗାଡ଼ି ଅଟକାଇ ଦିଅନ୍ତି ଓ ପାଖ ଲୋକେ ଭୟରେ ଚିତ୍କାର ନ କରିବା ପାଇଁ ବୁଝାଇ ଦିଅନ୍ତି । ବେଳେ ବେଳେ ପଶୁଟିକୁ ସେଠାରୁ ତଡ଼ିବା ପାଇଁ ଆକାଶ ଆଡ଼କୁ ଫାଙ୍କା ଗୁଳି ଚଳାଇବାକୁ ପଡ଼େ । ଆଫ୍ରିକାରେ ଥରେ ଗୋଟିଏ ମତ୍ତ ହାତୀ 91 ମିଟର ମଧ୍ୟରେ ଆସୁଥିବା ସବୁ ଗାଡ଼ିକୁ ଗୋଡ଼ାଇଥିଲା । ଥରେ ସେ ଜଣେ ଜଗୁଆଳୀର ଟ୍ରକ୍‌କୁ 5 କି.ମି. ଦୂରତା ଯାଏଁ ଗୋଡ଼ାଇଥିଲା । ତା'କୁ ଶେଷରେ ଗୁଳି କରି ମାରି ଦିଆଗଲା । ନିଜର ଦାନ୍ତ, ମୁଣ୍ଡ ଓ ଶୁଣ୍ଢକୁ ବ୍ୟବହାର କରି କୌଣସି ହାତୀ ଗୋଟିଏ ଟ୍ରକ୍‌କୁ ପୂରାପୂରି ଭାଙ୍ଗିରୁଜି ଦେଇପାରେ । ଆଫ୍ରିକାର ଗୋଟିଏ ଜାତୀୟ ପାର୍କରେ ଡେରିରେ ଗୋଟିଏ ନୂଆ ସଡ଼କ ବନାଯାଇଥିଲା । ଏହାଠାରୁ ଦୂରେଇ ରହିବା ବିଷୟ ସେଠାକାର ଜୀବଜନ୍ତୁମାନଙ୍କୁ ଜଣା ନ ଥିଲା । ଦିନେ ସେହି ବାଟରେ ଯାଉଥିବା ଗୋଟିଏ ଟ୍ରକ୍‌କୁ ସେଠାକାର ଗୋଟିଏ ହାତୀ ମୁଣ୍ଡରେ ଆଘାତ କଲା । ଏହାଦ୍ୱାରା ସେଥିରେ ଯାଉଥିବା ଦୁଇଜଣ ଯାତ୍ରୀ ଭୀଷଣ ଭାବେ ଆହତ ହୋଇଥିଲେ । ହାତୀଟି ମଧ୍ୟ ସେହିପରି ଆଘାତ ପାଇଥିଲା ।

ମୁର୍ଚିସନ୍ ପାର୍କର ଗୋଟିଏ ଉଡ଼ାଜାହାଜ ଓହ୍ଲେଇବା ସ୍ଥାନ ନିକଟରେ ଥରେ ଗୋଟିଏ ମଉଜିଆ ଘଟଣା ଘଟିଥିଲା । ଡାକୋଟା ପରି ଛୋଟ ବିମାନ ଓହ୍ଲେଇବା ପାଇଁ ସେଠାରେ

Digitized by srujanika@gmail.com

ଜଙ୍ଗଲର ଅଳ୍ପ କିଛି ସ୍ଥାନ ସଫା କରାଯାଇଥିଲା । ପାଞ୍ଚ ହଜାର କିଲୋଗ୍ରାମର ଗୋଟିଏ ଟ୍ରକ୍ ସେଇ ବାଟରେ ଯାଉଥିଲା । ଏହି ସମୟରେ ଜଙ୍ଗଲରୁ ଗୋଟିଏ ଦନ୍ତା ହାତୀ ବାହାରି ଆସି ତା'ର ବାଟ ଓଗାଳିଲା । ଦାନ୍ତ ଦ୍ୱାରା ସେ ଟ୍ରକ୍‌ଟିକୁ ଥରକୁ ଥର ଆଘାତ କଲା । ତା'ର ପ୍ରଥମ ଲକ୍ଷ୍ୟ ଥିଲା ଟ୍ରକ୍ ଇଞ୍ଜିନ୍‌ଟିର ଘୋଡ଼ଣି । ତା' ପରେ ଏହାର ଡାଲା । ତା'ର ଦାନ୍ତ ମାଡ଼ରେ ଗାଡ଼ିଟିର ତେଲ ଟାଙ୍କିରେ କଣା ହୋଇଗଲା । ଆଉ ଗୋଟିଏ ଆଘାତରେ ଟ୍ରକ୍‌ଟି ଓଲଟି ପଡ଼ିଲା ଓ ଏହାର ଗତି ବନ୍ଦ ହୋଇଗଲା । ହାତୀଟିର ଦାନ୍ତ ମାଡ଼ରେ ଲୁହାରେ ହୋଇଥିବା କଣାଗୁଡ଼ିକ ସାଙ୍ଗୁ ଭେଦ କରି ପାରିବା 55 ମି.ମି. ଗୁଳି ମାଡ଼ରେ ହୋଇଥିଲା ପରି ଦିଶୁଥିଲା । ଟ୍ରକ୍‌ର ଲୁହା ଚଦର ଗୁଡ଼ିକ କଦଳୀ ପଟୁଆ ପରି ଛାଡ଼ି ଯାଇ ଏଣେ ତେଣେ ପଡ଼ିଥିଲା । ଭାଗ୍ୟବଶତଃ, ଟ୍ରକ୍‌ରେ ଥିବା ଆରୋହୀ ତିନିଜଣ ଗୁରୁତର ଭାବେ ଆହତ ହୋଇ ନଥିଲେ ।

ଛାତ୍ରାବସ୍ଥାର ଗୋଟିଏ ଘଟଣା ବେଶ୍ ଭଲରୂପେ ମୋର ମନେ ଅଛି । ସେତେବେଳେ ମୁଁ ଗୋଟିଏ *ଆଶ୍ରମ*ରେ ଥିଲି । ସେଇ *ଆଶ୍ରମ*ଟି ଗଙ୍ଗା ନଦୀ କୂଳରେ ଶିବାଲିକ୍ ପର୍ବତର ପାଦ ଦେଶରେ ଥିଲା । ମାଟି କାଦୁଅରେ ତିଆରି କେତୋଟି ଘରେ ଏହି *ଆଶ୍ରମ*ଟି ଚାଲୁଥିଲା । ହରିଦ୍ୱାର ଯିବାକୁ ହେଲେ 6.5 କି.ମି. ବାଟ ଘଞ୍ଚ ଜଙ୍ଗଲରେ କଣ୍ଟାବୁଦା ଭିତର ଦେଇ ଯିବାକୁ ହେଉଥିଲା । ମଝି ମଝିରେ ଅତି ବେଗରେ ବହୁଥିବା ପାହାଡ଼ିଆ ଝରଣା ଡେଇଁଯିବାକୁ ପଡୁଥିଲା । ବର୍ଷା ଋତୁରେ ତ ଅବସ୍ଥା ସାଂଘାତିକ ହୋଇ ଉଠୁଥିଲା । ଗଙ୍ଗା ନଦୀରେ ବଢ଼ି ଆସିଲେ ପୋଲଗୁଡ଼ିକୁ ଭସାଇ ନେଉଥିଲା ଏବଂ ନଉକା ଚଳାଇବା ବି ବନ୍ଦ ରହୁଥିଲା । ଆମେ ଜଙ୍ଗଲରେ ବନ୍ଦୀ ହୋଇଯାଉଥିଲୁ । ମୋର ଯେତେଦୂର ମନେ ପଡୁଛି, ତାହା 1928 ବର୍ଷା ଋତୁର ଗୋଟିଏ ଦିନ ଥିଲା । ମୁଁ ହରିଦ୍ୱାରରୁ ମୋର ତିନିଜଣ ସାଥୀଙ୍କ ସହିତ *ଆଶ୍ରମ*କୁ ଫେରି ଆସୁଥିଲି । ଆମେ ଅଞ୍ଜନ ବଣ (ଆଖିର ଅଞ୍ଜନ ପରି ଏହା ଅନ୍ଧାର ଦେଖାଯାଉଥିଲା ।) ପାଖାପାଖି ହୋଇଥାଉ । ଝରଣାଟିଏ ପାର ହେବା ପାଇଁ ଆମେ ଏହାର ଗୋଟିଏ ଘାଟରେ ତଳକୁ ଓହ୍ଲାଉଥିଲୁ । ଏହି ସମୟରେ ଗୋଟିଏ କଣା ଦନ୍ତା ହାତୀ ଆମକୁ ପଛରୁ ଆକ୍ରମଣ କଲା । ଏକେ ଅଣ୍ଡିରା ହାତୀ ଓ ତହିଁରେ ପୁଣି କଣା । ଆମେ ଆମ ଗଣ୍ଠିଲି ଆଦି ପକାଇଦେଇ ପ୍ରାଣ ବିକଳରେ ଦଉଡ଼ିଲୁ । ପରେ ଆମେ ବୁଝି ପାରିଲୁ ଯେ, ଆମର ସେଇ ଗଣ୍ଠିଲି ଗୁଡ଼ିକ ହିଁ ସେଦିନ ଆମକୁ ବଞ୍ଚାଇ ଦେଇଥିଲା । ଦନ୍ତା ହାତୀଟି ତା'ର ରାଗ ସେଇ ଗଣ୍ଠିଲି ଗୁଡ଼ିକ ଉପରେ ସୁଝାଇଥିଲା । ସେ ସେଗୁଡ଼ିକୁ ଦଳି ଚକଟି ଖଣ୍ଡ ଖଣ୍ଡ କରି ଦେଉଥିଲା ବେଳେ ଆମେ ବେଶ୍ ସୁବିଧାରେ ସେଠାରୁ ଖସି ଯାଇଥିଲୁ । ଯଦି ଆମ ଭିତରୁ କାହାରିକୁ ସେ ପାଖରେ ପାଇଥାନ୍ତା, ତେବେ ନିଶ୍ଚିତ ଭାବରେ ଆମ ମାଉଁସକୁ କୀମା କରି ଦେଇଥାନ୍ତା । ତେଣୁ ସବୁବେଳେ ସବୁଠାରୁ ଭଲ ଉପାୟ ହେଉଛି, ଯଦି ଦୁର୍ଭାଗ୍ୟ ଯୋଗୁଁ କେହି କେବେ କୌଣସି ଦନ୍ତା ହାତୀର ଶିକାର ହୁଏ, ତେବେ ସେ ନିଜର କୋଟ୍, ଜାମା, ପଗଡ଼ି ତଥା ଯାହା କିଛି ଧରିଥିବେ,ତାକୁ ସବୁ ତା' ଦିଗକୁ ଫିଙ୍ଗିଦେବେ ଓ ଯେତେ ଚଞ୍ଚଳ ପାରିବେ ସେଠାରୁ ଦୂରକୁ ଧାଇଁ ପଳାଇବେ । ପକାଇ ଦେଇଥିବା ଜିନିଷଗୁଡ଼ିକ ସହିତ ଜନ୍ତୁଟି ଲାଗିଥିବା ସମୟରେ ମନୁଷ୍ୟ ତା'ର ବିପଦରୁ ନିରାପଦ ସ୍ଥାନକୁ ଚାଲିଯିବାର ସୁଯୋଗ ନେବା

Digitized by srujanika@gmail.com

ଦରକାର । ଥରେ ଗୋଟିଏ ଦନ୍ତା ହାତୀ ଜଣେ ପର୍ଯ୍ୟଟକଙ୍କ କାର୍‌କୁ ଆକ୍ରମଣ କରିଥିଲା । ଘଟଣାକ୍ରମେ କଦଳୀ ଭରା ହୋଇଥିବା ଗୋଟିଏ ବଡ଼ ଟିଣ କାର୍ ଭିତରୁ ତଳକୁ ଖସିପଡ଼ିଲା ଓ ତାହା ହିଁ ହାତୀଟିକୁ ଅନେକ ସମୟ ଯାଏଁ କାମରେ ଲଗାଇ ରଖିଲା । ସେହି ସମୟରେ କାର୍‌ର ଚାଳକ ଦ୍ରୁତ ବେଗରେ ଗାଡ଼ି ଚଳାଇ ସେଠାରୁ ଖସି ପଳାଇ ଯାଇପାରିଲେ ।

ଅନେକ ଜାତୀୟ ପାର୍କ ଓ ଅଭୟାରଣ୍ୟ ବୁଲି ବଣୁଆ ହାତୀମାନଙ୍କୁ ପର୍ଯ୍ୟବେକ୍ଷଣ କରିବା ଓ ସେମାନଙ୍କର ଫଟୋ ଉଠାଇବା ପାଇଁ ମୋତେ ସୁବିଧା ମିଳିଛି । ମୋ ଅନୁଭୂତି ହେଉଛି, ଆପଣ ଯଦି ଗୋଟିଏ ଦନ୍ତା ହାତୀ ଉପରେ ବସି କେଉଁଆଡ଼େ ଯାଉଥାନ୍ତି, ତେବେ ଆପଣଙ୍କ ପାଇଁ ଏକଲା ରହୁଥିବା କୌଣସି ଦନ୍ତାହାତୀର ବିପଦ ଆସିପାରେ । ଦଳରେ ଥିବା ହାତୀମାନେ ସାଧାରଣତଃ ବୁଲାଚଲା କରୁଥିବା ଲୋକଙ୍କ ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ଆପଣ ନିଜ ହାତୀକୁ ଠିକ୍ ଦଳ ଥିବା ସ୍ଥାନକୁ ନେଇପାରନ୍ତି । ଆପଣଙ୍କ ହାତୀଟି ଯଦି ଭଲ ଭାବେ ତାଲିମ ପାଇଥାଏ, ତେବେ ଦଳ ଭିତର ଦେଇ ଯିବା ବିପଦ ବି ଆପଣ ମୁଣ୍ଡେଇ ପାରନ୍ତି । କୌତୂହଳ ଯୋଗୁଁ କିମ୍ବା ଭଦ୍ରାମୀ ଦେଖାଇ ବଣୁଆ ହାତୀଟିଏ ଆପଣଙ୍କ ହାତୀ ଦେହକୁ ଲାଗି ଆସିଯାଇପାରେ । କିନ୍ତୁ ସାଧାରଣତଃ ସେ ଆରୋହୀ ପ୍ରତି ସଚେତନ ଥିବାର କୌଣସି ସୂଚନା ଦେଇ ନ ଥାଏ ।

ହାତୀ ଯଦି କାହାକୁ ଆକ୍ରମଣ କରେ, ସେ ସେତେବେଳେ ରାସ୍ତାରେ କଦାପି ସିଧା ଧାଇଁବେ ନାହିଁ । ସମତଳ ଭୂମିରେ ହାତୀଟିଏ ଘଣ୍ଟା ପିଛା ସହଜରେ 40ରୁ 48 କି.ମି. ବେଗରେ ଧାଇଁପାରେ ଓ ମଣିଷକୁ ଦଉଡ଼ରେ ଟପିଯାଇପାରେ । କିନ୍ତୁ ବଙ୍କା ରାସ୍ତାରେ ମୋଡ଼ ଦେଇ ଖାଲ ଢିପ ସଂକୀର୍ଣ୍ଣ ପାଦଚଲା ରାସ୍ତା ଦେଇ ଧାଇଁବା ଲୋକଟି ପାଇଁ ନିରାପଦ ଅଟେ । ଦେହ ଗଠନ ଦିଗରୁ ହାତୀ ଏପରି ରାସ୍ତାରେ ସହଜରେ ଧାଇଁବା ପାଇଁ ଉପଯୁକ୍ତ ନୁହେଁ । ସେ ତା'ର ଏପଟ ସେପଟ ଗତିରେ ବାଉଳା ହୋଇଯାଏ; ଆଉ ସେ ସମୟରେ ଜଣେ ସେଠାରୁ ଖସି ଯାଇପାରେ । ରାସ୍ତା ଯଦି ପାହାଡ଼ିଆ ହୋଇଥାଏ, ତେବେ ଗଡ଼ାଣିଆ ବାଟରେ ତଳକୁ ଖସିବା ଦରକାର । କାରଣ ଗଡ଼ାଣିଆ ବାଟରେ ହାତୀର ପାହୁଣ୍ଡ ଧିମେଇଯାଏ । ମାତ୍ର ଉଠାଣିରେ ସେ ଚଞ୍ଚଳ ଧାଇଁପାରେ ଏବଂ ଶିକାରକୁ ଭେଟି କାବୁ କରି ଦେଇପାରେ । ଗଡ଼ାଣିଆ ରାସ୍ତାରେ ଧାଇଁ ପଳାଇବା ବେଳେ, ଯେଉଁ ବାଟରେ ଗୋଟାଳିଆ ପଥର ଖଣ୍ଡ ସବୁ ପଡ଼ିଥାଏ, ସେପରି ରାସ୍ତା ବାଛିନେବା ବୁଦ୍ଧିମାନର କାମ । ମଣିଷ ପଥର ଉପରେ ପାଦ ପକାଇ ଓ ଡେଇଁ ଡେଇଁ ଯାଇପାରେ; କିନ୍ତୁ ହାତୀ ସେପରି ଚାଲିପାରେ ନାହିଁ । କାରଣ ତା'ର ଅତି ବଡ଼ ଦେହର ଓଜନରେ ଛୋଟ ପଥର ଖଣ୍ଡ ଏପଟ ସେପଟ ହୁଏ । ଫଳରେ ନିଜର ଦେହକୁ ସମ୍ଭାଳି ନେବା ହାତୀ ପାଇଁ କଷ୍ଟକର ହୋଇପଡ଼େ । ହାତୀ ଏହା ଜାଣିଥାଏ । ଏପରି ପରିସ୍ଥିତିରେ ସେ କେବଳ ପଛ ଦୁଇ ଗୋଡ଼କୁ ଭାଙ୍ଗି ଆଣ୍ଠେଇଯାଏ ଏବଂ ଆଗ ଦୁଇଗୋଡ଼କୁ ସିଧା ରଖି, ଗଡ଼ାଣିଆ ରାସ୍ତାରେ ଖସି ପଡ଼େ । ରାସ୍ତା ଖସଡ଼ିଆ ହୋଇଥିଲେ ବି ହାତୀ ନିଜକୁ ଖସେଇ ତଳେ ପହଞ୍ଚିବାରେ କଷ୍ଟ ଅନୁଭବ କରେ ନାହିଁ ଏବଂ ଖୁବ୍ ଚଞ୍ଚଳ ନିଜକୁ ସମ୍ଭାଳି ନେଇ ଠିଆ ହୋଇପଡ଼େ ।

Digitized by srujanika@gmail.com

ବିଲେଇର ଛକି ଛକି ଚାଲିବା ସହିତ ସମସ୍ତେ ପରିଚିତ । କିନ୍ତୁ ଜଙ୍ଗଲ ଭିତରେ ହାତୀଟିଏ ଚାଲିଯାଉଥିବାର ଯିଏ ଦେଖିଛି, ସେ ନିଶ୍ଚୟ ମୁଗ୍ଧ ହୋଇଯାଇଥିବ । ଦେହଟା ତା'ର ଏତେ ବଡ଼ ଓ ଏତେ ଓଜନିଆ ହୋଇଥିଲେ ବି ଚାଲି ତା'ର ବେଶ୍ ସହଜ, ସରଳ, ମୃଦୁ-ମନ୍ଦ ଓ ଓ ଶବ୍ଦ-ହୀନ । ହାତୀର ହାରାହାରି ଗତିର ବେଗ ସାଧାରଣତଃ 6.5 କି.ମି । ଧାଇଁଲେ ଏହି ବେଗ ବଢ଼ି ଅତି ବେଶିରେ ଘଣ୍ଟା ପିଛା 32 କି.ମି. ହୋଇପାରେ । କିନ୍ତୁ ସତ କହିବାକୁ ଗଲେ, ଏଇ ବେଗରେ ସେ ଅଧିକ ସମୟ ଧାଇଁ ପାରେ ନାହିଁ । ସାଧାରଣ ଭାବରେ ଘଣ୍ଟାକରେ 16 କି.ମି. ବେଗରେ ସେ ବେଶ୍ ଅଧିକ ସମୟ ଧାଇଁପାରେ ।

ସୌଭାଗ୍ୟ ହେଉଛି, ହାତୀ ବିଶେଷ ଦୂରକୁ ଭଲ ଭାବେ ଦେଖି ପାରେ ନାହିଁ । ତେଣୁ ଜଣେ ଯଦି ନିଜକୁ ବେଶ୍ କିଛି ଦୂରରେ ଅତି ଶୀଘ୍ର କୌଣସି ଗଛ କିମ୍ବା ପଥର ଉହାଡ଼ରେ ଲୁଚାଇ ରଖେ, ତେବେ ନିରାପତ୍ତାର ସୁଯୋଗ ବହୁତ ଅଧିକ ହୋଇଥାଏ ।

ହାତୀକୁ ସମୀପ ଦୃଷ୍ଟି ଦୋଷ ଥିବା ପ୍ରାଣୀ ଅପେକ୍ଷା ଦୁର୍ବଳ ଦୃଷ୍ଟି ଶକ୍ତି ଥିବା ପ୍ରାଣୀ ବୋଲି କୁହାଯିବା ଉଚିତ । ମନୁଷ୍ୟ ଯେତିକି ଦୂର ଯାଏଁ ଦେଖିପାରେ, ହାତୀ ମଧ୍ୟ ସେତିକି ଦୂରଯାଏଁ ଦେଖି ପାରୁଥିବା ନିଃସନ୍ଦେହ । କିନ୍ତୁ ତା'ର ଅତି ଛୋଟ ଆଖି ଖଣ୍ଡେ ଦୂରରେ ଥିବା ଜିନିଷ ଉପରେ ସଠିକ୍ ଭାବେ ନିବଦ୍ଧ ହୁଏ ନାହିଁ । ନିଜର ଦୃଷ୍ଟିକୁ ଜିନିଷଟି ଉପରେ ନିବଦ୍ଧ କରିବା ପାଇଁ ସେ କିଛି ସମୟ ନେଇଥାଏ । ଏଇ ଦୁର୍ବଳତାକୁ ଭରଣା କରିବା ପାଇଁ ସେ ତା'ର ବଡ଼ ବଡ଼ କାନ ଉପରେ ନିର୍ଭର କରେ । ହାତୀର ଶ୍ରବଣ ଶକ୍ତି ବିଶେଷ ଭାବରେ ବିକଶିତ ।

ହାତୀ ଚମତ୍କାର ଭାବେ ଅତ୍ୟଧିକ ଘ୍ରାଣ ଶକ୍ତିର ଅଧିକାରୀ । ଆଖ ପାଖରେ ମଣିଷଟିଏ ଥିଲେ ସେ ତା'ର ଏଇ ଆଘ୍ରାଣ ଶକ୍ତି ଦ୍ୱାରା ଜାଣିପାରେ ଓ ପିଛା କରେ । ଅନେକ ସମୟରେ ଦେଖି, ଶୁଣି କିମ୍ବା ବାସନା ପାଇଁ ମଣିଷଟିଏ ଥିବା ପ୍ରତି ସଚେତନ ହେଲେ ହେଁ, ହାତୀ ସେ ସ୍ଥାନକୁ ଘୁଞ୍ଚେ ନାହିଁ ଏବଂ ଯଦି ଲୋକଟି ତା'ର ପାଖକୁ ଯାଏ, ତେବେ ସେ ଆକ୍ରମଣ ମଧ୍ୟ କରିଥାଏ ।

ଅନ୍ୟର ଦୃଷ୍ଟିକୁ ପ୍ରତାରିତ କରି ଆତ୍ମରକ୍ଷା କରିବା ଦିଗରେ ହାତୀର ଗାଢ଼ ପାଉଁଶିଆ କଳା ରଙ୍ଗ ଚମତ୍କାର ଭାବେ ଖାପଖାଏ । ଜଙ୍ଗଲ ପରିବେଶରେ ସେ ଏପରି ଭାବରେ ମିଶିଯାଏ ଯେ ଚାଲବୁଲ ନ କଲେ, କେଉଁଠି ହାତୀଟିଏ ଅଛି ସନ୍ଦେହ କରିବା ବି କଷ୍ଟକର ହୋଇପଡ଼ିଥାଏ ଏବଂ ତା' ପାଖରେ ନ ପହଞ୍ଚିବା ଯାଏଁ ଏହା ଜାଣି ହୁଏ ନାହିଁ ।

Digitized by srujanika@gmail.com

2

# ମିଳନ ଓ ବାସ

## ଶୁଭ ଜୀବ

ପ୍ରାଚୀନ ଭାରତରେ ହାତୀକୁ ଯଥେଷ୍ଟ ଉଚ୍ଚ ସମ୍ମାନ ଦିଆଯାଉଥିଲା । ମଣିଷମାନଙ୍କ ପାଇଁ ଉପଯୋଗୀ ଜୀବଜନ୍ତୁଙ୍କ ମଧ୍ୟରେ ଗାଈ ଓ ଘୋଡ଼ାଙ୍କ ପରେ ହାତୀକୁ ଉଚ୍ଚ ସ୍ଥାନ ଦିଆଯାଇଥିଲା । *ଶାସ୍ତ୍ର*ରେ ହାତୀ ମାରିବାକୁ ନିଷେଧ କରାଯାଇଥିଲା । ଆଜିକାଲି ବି ଆମେ ଗଣେଶଙ୍କୁ ପୂଜା କରୁଛେ, ଯାହାଙ୍କର ମୁଣ୍ଡଟି ହାତୀମୁଣ୍ଡ ଅଟେ । ବୋଧଗୟା, ଭାର୍‌ହଟ୍, ଅମରାବତୀ ଓ ଉଦୟଗିରି ମନ୍ଦିରଗୁଡ଼ିକର ଭଙ୍ଗା ଅଂଶରେ ଅନେକ ପଥର ଖୋଦେଇରେ ଦେବୀ ଲକ୍ଷ୍ମୀଙ୍କୁ ହାତୀଙ୍କ ଗହଳରେ ଦେଖିବାକୁ ମିଳୁଛି । ରାମଙ୍କ ବିଖ୍ୟାତ ଉଡ଼ନ୍ତା ରଥ ପୁଷ୍ପକରେ ଗୋଟିଏ ଚିତ୍ର ଦେଖିବାକୁ ମିଳେ, ଯେଉଁଥିରେ ଲକ୍ଷ୍ମୀ ଗୋଟିଏ ପଦ୍ମଫୁଲ ଉପରେ ବସିଥାନ୍ତି ଓ ତାଙ୍କର ଉଭୟ ପଟେ ହାତୀମାନେ ଶୁଣ୍ଢରେ ପଦ୍ମ ଫୁଲକୁ ଟେକି ଧରି ଉପରୁ



Digitized by srujanika@gmail.com

ଦେବୀଙ୍କ ଉପରେ ପାଣି ଛିଞ୍ଚୁଛନ୍ତି । *ପୁରାଣ*ରେ ଚାରିଦିଗରେ ଚାରି ଦ୍ୱାରପାଳ ଦେବତା ରୂପରେ ଚାରିଟି ହାତୀ ଥିବାର ବର୍ଣ୍ଣନା ରହିଛି । ସୁମେରିଆନ୍‌ମାନେ ଅଧିକ ସଂଖ୍ୟାରେ ବିଶ୍ୱାସ କରୁଥିଲେ ଯେ, ହାତୀ ହେଉଛି ଜୀବନ ବୃକ୍ଷର ରକ୍ଷାକର୍ତ୍ତା । ଏହା ଥିଲା ଖଗୋଳ ବୃକ୍ଷ, *ଅର୍ବର୍ ଟିଟେ* (କଳ୍ପ ବୃକ୍ଷ) ଯାହା ସମସ୍ତ ଇଚ୍ଛା ପୂରଣ କରିପାରୁଥିଲା । ମେସୋପଟାମିଆରୁ ମିଳିଥିବା ନେବୁଚାଦ୍‌ନେଜାର୍‌ଙ୍କ ସମୟର ଗୋଟିଏ ମୋହରରେ ହାତୀର ଛବି ରହିଛି, ଯାହାର ଦେହଟି ଷଣ୍ଢ ପରି ରହିଛି । ପଶୁଟି ଜୀବନ ବୃକ୍ଷ କଡ଼ରେ ଠିଆ ହୋଇ ଆକ୍ରମଣକାରୀ ଗୁଣ୍ଡାଙ୍କ ଦାଉରୁ ବୃକ୍ଷଟିକୁ ରକ୍ଷା କରୁଛି । ମେସୋପଟାମିଆରେ ହାତୀ ନାହାନ୍ତି, ତେଣୁ ଆଶା କରାଯାଇଥାଏ ଯେ ସୁମେରିଆନ୍‌ମାନେ ବୋଧହୁଏ ସିନ୍ଧୁ ଉପତ୍ୟକାର ସଭ୍ୟତାରୁ ଏହି ଧାରଣାଟି ନେଇଥାଇପାରନ୍ତି ।

ହରପ୍ପା ଓ ମହେଞ୍ଜୋଦାରୋରୁ ମିଳିଥିବା ଫଳକ ଗୁଡ଼ିକରେ ହାତୀଙ୍କର ଅନେକ ଚିତ୍ର ଅଙ୍କାଯାଇଥିବାର ଦେଖିବାକୁ ମିଳୁଛି । ଗୋଟିଏ ଫଳକର ଏକ ପାଖରେ ଗୋଟିଏ ବାଘ ଶିକାରର ଦୃଶ୍ୟତଳେ କିଛି ଲେଖା ରହିଛି, ଏହାର ଆରପାଖରେ ପଛକୁ ପଛ ଗୋଟିଏ ଏକ ଶିଙ୍ଗିଆ ଘୋଡ଼ା, ଗୋଟିଏ ହାତୀ ଓ ଗଣ୍ଡାଟିଏ ଠିଆ ହୋଇ ଜୀବନ ବୃକ୍ଷଟି ପ୍ରତି ପ୍ରଣିପାତ ହେଉଛନ୍ତି । ମହେଞ୍ଜୋଦାରୋରୁ ମିଳିଥିବା ଆଉ ଏକ ଫଳକରେ ଗୋଟିଏ ଗଣ୍ଡା, ହାତୀ, ବାଘ, ଚିତା, ଛୋଟ ଶିଙ୍ଗଥିବା ଷଣ୍ଢ, ଗୋଟିଏ ବଣୁଆ ଷଣ୍ଢ, ଛେଳି, ଡଲ୍‌ଫିନ୍, କଇଁଚ ଓ ମାଛଟିଏ – ବିଭିନ୍ନ ମାଂସାହାରୀ ଓ ଶାକାହାରୀ ଜୀବଙ୍କର ଏକ ବିଚିତ୍ର ଗୋଠ – ଏକାଠି ଥାଇ ଜୀବନ ବୃକ୍ଷ ପ୍ରତି ପ୍ରଣିପାତ ହେଉଛନ୍ତି । ମହେଞ୍ଜୋଦାରୋରୁ ଆଉ ଏକ ଚାରିକୋଣିଆ ଫଳକ ମିଳିଛି, ଯେଉଁଥିରେ ବ୍ରହ୍ମାଙ୍କ ପରି ଜଣେ ତିନିଦିଗକୁ ମୁହାଁଇଥିବା ଜଣେ ଦେବତା ଯୋଗାସନରେ ବସିଛନ୍ତି; ତାଙ୍କର ଡାହାଣପଟେ ଗୋଟିଏ ହାତୀ ଓ ବାଘ ଥିଲାବେଳେ ବାମପଟେ ଗୋଟିଏ ଗଣ୍ଡା ଓ ମଇଁଷି ରହିଛନ୍ତି । ଏହାର ତଳ ପାଖରେ ଦୁଇଟି ହରିଣ ସାମନା ସାମନି ଠିଆ ହୋଇଛନ୍ତି, କିନ୍ତୁ ସେମାନଙ୍କ ମୁଣ୍ଡ ବିପରୀତ ଦିଗକୁ ମୁହାଁଇଛି । ଏହାକୁ ପଶୁପତିଙ୍କର ମୂର୍ତ୍ତି ବୋଲି ବିଶ୍ୱାସ କରାଯାଉଛି । ଏହି ମୂର୍ତ୍ତିରେ ମଜାଦାର କଥାଟି ହେଉଛି ଏଥିରେ କେବଳ ହାତୀଟିକୁ ଛାଡ଼ିଦେଲେ ଅନ୍ୟ ପଶୁ ତିନୋଟି ଦେବତାଙ୍କୁ ଅନାଇ ରହିଛନ୍ତି । ହାତୀଟିର ପାଖରେ ଜଣେ ମଣିଷ ଠିଆ ହୋଇଛି – ସେ ଜଣେ ଯୋଦ୍ଧା ହୋଇପାରେ – ଯିଏ କି ହାତୀଟିକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଛି ଯେପରି ସେ ପଶୁପତିଙ୍କ ଠାରୁ ଦୂରକୁ ପଳାଇ ନ ଯାଏ । ଆଉ ଏକ ମୋହରରେ ଗୋଟିଏ ହାତୀକୁ କଳା ଯାଦୁ ଦ୍ୱାରା ବଶ କରିବା ପାଇଁ ଚେଷ୍ଟା କରାଯାଉଥିବାର ଦେଖିବାକୁ ମିଳୁଛି । ଏହା ତାଙ୍କୁ ବିଶେଷ ସହଜ ମନେ ହେଉନାହିଁ । ଯୋଦ୍ଧାଙ୍କର ଆଦେଶକୁ ଅବଜ୍ଞା କରି ହାତୀଟି କେବଳ ତା'ର ପଛଗୋଡ଼ରେ ଠିଆ ହୋଇଯାଇଛି ଓ ମୁଣ୍ଡରେ ଆକ୍ରମଣ କରୁଛି । ହରପ୍ପାରୁ ମିଳିଥିବା ଗୋଟିଏ ମୋହରରେ ଦେଖିବାକୁ ମିଳୁଛି, ଦୁଇଟି ବାଘ ଶିକାର କରିଥିବା ଜଣେ ଯୋଦ୍ଧାକୁ ଦେଖି ହାତୀଟିଏ ଚୁପ୍‌ଚାପ୍ ତା'ଠାରୁ ଦୂରେଇ ଯାଉଛି ।

Digitized by srujanika@gmail.com

ଅମରାବତୀର ମନ୍ଦିରରେ ଭଗ୍ନାବଶେଷରେ ଥିବା ହାତୀଟି ଗୋଟିଏ ମଜାଦାର ଜୀବ ପରି ମନେହେଉଛି : ଏହାର ଦେହର ପଛଭାଗଟି ଗୋଟିଏ ମାଛ ପରି ହୋଇଛି । *ମହାଭାରତ*ରେ ଏପରିକା ମାଛରୂପୀ ଜୀବକୁ ମୀନବଳୀ ବା *ଗଜବକ୍ତ୍ରଝଷ*ବୋଲି ବର୍ଣ୍ଣନା କରାଯାଇଛି । ବାଲ୍ମୀକିଙ୍କର ଗୋଟିଏ ଯୁଦ୍ଧ କ୍ଷେତ୍ରର ବର୍ଣ୍ଣନାରେ ଏପରି ଏକ ଧାରଣା ମିଳିପାରୁଛି, ଯେଉଁଥିରେ ସେ ହାତୀଭରା ଗୋଟିଏ ଯୁଦ୍ଧକ୍ଷେତ୍ରକୁ ଗୋଟିଏ ଶାର୍କ ଓ ମାଛଭରା ଗୋଟିଏ ସମୁଦ୍ର ରୂପେ ତୁଳନା କରିଛନ୍ତି ।

ବେଳେ ବେଳେ ଆମେ ଏକଦନ୍ତ ବିଶିଷ୍ଟ ହାତୀ ଦେଖିବାକୁ ପାଇଥାଉ । ଗଣେଶଙ୍କର ବି ଗୋଟିଏ ଦାନ୍ତ ଥିବାର କୁହାଯାଇଛି । ତେଣୁ ତାଙ୍କୁ ଏକଦନ୍ତ ବୋଲି କୁହାଯାଇଥାଏ । ଏଥିପାଇଁ ଏକଦନ୍ତ ବିଶିଷ୍ଟ ହାତୀକୁ ସ୍ନେହରେ ଗଣେଶ ବୋଲି ବି ଡକାଯାଇଥାଏ । 1967 ମସିହାରେ କର୍‌ବେଟ୍ ଜାତୀୟ ପାର୍କରେ ମୁଁ ଗୋଟିଏ ଏକଦନ୍ତ ବିଶିଷ୍ଟ ହାତୀ ଦେଖିବାକୁ ପାଇଥିଲି । ତା'ର ଏହି ଶାରୀରିକ ସୀମିତତା ସତ୍ତ୍ୱେ ସେ ଗୋଟିଏ ହାତୀ ଦଳର ମୁଖିଆ ଥିଲା । ତା' ଦଳରେ ଆହୁରି ତିନୋଟି ହାତୀ ଥିଲେ ଯେଉଁମାନଙ୍କର ଦୁଇଟି ଲେଖାଁଏ ଦାନ୍ତ ଥିଲା, କିନ୍ତୁ ସେମାନେ ସମସ୍ତେ ତା'ଠାରୁ ଦୂରେଇ ରହୁଥିଲେ । ସେମାନଙ୍କ ମଧ୍ୟରେ ସେତେ ଭଲ ସମ୍ପର୍କ ନ ଥିଲା ।

1936 ମସିହାରେ ଆସାମର *ଖେଦା*ରେ ଏପରି ଗୋଟିଏ ଦନ୍ତାହାତୀକୁ ଧରାଯାଇଥିଲା । ଏହାର ଆକାର ବିଶେଷ ବଡ଼ ନଥିଲେ ବି ଏହା ବେଶ୍ ଶକ୍ତିଶାଳୀ ଥିଲା । ତା'ର ବିରାଟ ଦାନ୍ତ ଦୁଇଟି ଉପରଆଡ଼କୁ ବଙ୍କେଇ ରହିଥିଲା, ଯେଉଁଥିପାଇଁ ସେ ଭୟଙ୍କର ଦେଖାଯାଉଥିଲା । ଥରେ ତାକୁ ନଦୀ କୂଳକୁ ନିଆଯାଉଥିଲା । ଏତିକିବେଳେ ସେ ତା'ର ଆଉ ଏକ ପ୍ରତିଦ୍ୱନ୍ଦୀ ଦନ୍ତା ହାତୀକୁ ଦେଖିବାକୁ ପାଇଲା, ଯାହାକୁ ଆଗରୁ ଏକ ଲଢ଼େଇରେ ସେ ହରାଇ ଦେଇଥିଲା । ତାକୁ ଦେଖି ସେ ଉତ୍କ୍ଷିପ୍ତ ହୋଇଉଠିଲା । ତାକୁ ଶାନ୍ତ ବା ନିୟନ୍ତ୍ରଣ କରିବା ପାଇଁ ତା'ର ମାହୁନ୍ତ କିଛି କରିବା ଆଗରୁ ସେ ତା'ର ଶତ୍ରୁଟିର ଛାତିରେ ତା'ର ମୁନିଆ ଦାନ୍ତକୁ ଭୁଷି ପ୍ରାଣରେ ମାରିଦେଲା ।

ଦକ୍ଷିଣ ଆଫ୍ରିକାର ଗୋଟିଏ ବେସରକାରୀ 'ଶିକାର ଅଭୟାରଣ୍ୟ' ଥିଲା । ଥରେ ଏଠାକାର ବାରାଡ଼େ ନାମକ ଜଣେ ଖେଳ ଜଗୁଆଳକୁ ଗୋଟିଏ ଏକଦାନ୍ତ ବିଶିଷ୍ଟ ହାତୀ ପିଛା କଲା । ବାରାଡ଼େକୁ ମାରିବା ପାଇଁ ପଶୁଟି ଅନେକ ସମୟ ଧରି ତାକୁ ଗୋଡ଼ାଇବାରେ ଲାଗିଲା । ବାରାଡ଼େ ଏଥର ଥକିଗଲା ଓ ହାତୀଟିର ଆଖିରୁ ଖସିବା ପାଇଁ ଚାହିଁଲା । ଏ ସମୟରେ ସେ ବାଣ୍ଟୁ ଆଦିବାସୀଙ୍କର ଗୋଟିଏ ବସ୍ତିରେ ପହଞ୍ଚିଯାଇଥିଲା । ସେ ଗୋଟିଏ କୁଡ଼ିଆ ଭିତରେ ପଶିଗଲା ଓ ଏକ ଦୁର୍ଗନ୍ଧ ହେଉଥିବା କୋଣରେ ଛପିଗଲା । ଦନ୍ତା ହାତୀ ଦେଖିଲା ଯେ ତାର ଶିକାରଟି ତାକୁ ଧୋକା ଦେଇଛି । ସେ ତା ବାଟରେ ଆସୁଥିବା ଜଣେ ମହିଳା ଅଧିବାସୀକୁ ଆକ୍ରମଣ କଲା । ସେ ମହିଳା ଜଣଙ୍କୁ ତା' ଶୁଣ୍ଢରେ ଉଠାଇନେଇ ଭୂମିରେ କଚାଡ଼ିଦେଲା । ତାକୁ ମାରିଦେଇ ବି ତା' ମନ ଶାନ୍ତ ହେଲା ନାହିଁ । ସେ ଥରକୁ ଥର ମହିଳାଙ୍କ ନିସ୍ତେଜ ଶବଟିକୁ ଉପରକୁ ଉଠାଇନେଉଥିଲା ଓ ପତାକାଟିଏ ପରି ଶୂନ୍ୟରେ

Digitized by srujanika@gmail.com

ହଲାଇ ପୁଣି ଭୂଇଁରେ ବାଡ଼େଇ ଦେଉଥାଏ । ତାକୁ ଗୁଳି କରି ମରାଯାଇ ନଥିଲେ, ସେ ନିଶ୍ଚୟ ଆହୁରି ଅନେକ ଲୋକଙ୍କର ଜୀବନ ନେଇଯାଇଥାନ୍ତା ।

## ବର୍ଗୀକରଣ

ହାତୀମାନଙ୍କୁ ଦୁଇଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇପାରେ : ଆଫ୍ରିକାର ହାତୀ *(ଏଲିଫାସ୍ ଆଫ୍ରିକାନ୍‌ସ)* ଓ ଏସୀୟ ହାତୀ *(ଏଲିଫାସ୍ ମାକ୍ସିମସ୍ ଇଣ୍ଡିକସ୍)* । ଅତୀତରେ ଏସିଆ ମହାଦେଶରେ ବିବିଧ ଜାତିର ହାତୀ ରହିଥିବାର ଲେଖାଅଛି । କିନ୍ତୁ ଆଜି ଭାରତ, ମିଆଁମାର୍, ଶ୍ରୀଲଙ୍କା ଓ ଇଣ୍ଡୋନେସିଆ ଆଦି ଦେଶରେ ଦେଖିବାକୁ ମିଳୁଥିବା ହାତୀସବୁ ଏକା ଜାତିର ବିବିଧ ପ୍ରକାର ବୋଲି ଜଣାପଡ଼ିଛି । ଏମାନଙ୍କ ଜାତିର ନାମ ଏଲିଫସ୍ ମାକ୍ସିମସ୍ । ତଳେ ଏସୀୟ ଓ ଆଫ୍ରିକୀୟ ହାତୀଙ୍କର ବିବିଧ ଗୁଣ ଓ ଗଠନର ତୁଳନାକୁ ଦିଆଯାଇଛି ।

| | *ଆଫ୍ରିକୀୟ ହାତୀ* | *ଭାରତୀୟ ହାତୀ* |
|---|---|---|
| ■ | ଆକାରରେ ବିଶାଳକାୟ | ଆକାର ଅପେକ୍ଷାକୃତ ଛୋଟ । |
| ■ | କାନ୍ଧଯାଏଁ ଉଚ୍ଚତା : 330 ସେ.ମି. | ପଛଭାଗର ମଝିଯାଏଁ ଉଚ୍ଚତା : 320 ସେ.ମି. |
| ■ | ସବୁଠୁ ଉଚ୍ଚ ସ୍ଥାନ : କାନ୍ଧ | ସବୁଠୁ ଉଚ୍ଚ ସ୍ଥାନ : ପଛର ମଝିଭାଗ |
| ■ | କାନ ଦୁଇଟି ବିରାଟକାୟ | କାନ ଦୁଇଟି ଛୋଟ |
| ■ | ଶୁଣ୍ଢଟି ଛୋଟ | ଶୁଣ୍ଢ ବିରାଟକାୟ |
| ■ | ଦାନ୍ତ ବିରାଟକାୟ | ଦାନ୍ତ ଛୋଟ |
| ■ | ଆଗ ଗୋଡ଼ରେ ଚାରିଟି ଲେଖାଏଁ ନଖ ଅଛି । | ଆଗ ଗୋଡ଼ରେ ପାଞ୍ଚଟି ଲେଖାଏଁ ନଖ ଅଛି । |
| ■ | ପଛ ପାଦରେ ତିନୋଟି ଲେଖାଏଁ ନଖ ଅଛି । | ପଛ ପାଦରେ ଚାରିଟି ଲେଖାଏଁ ନଖ ଅଛି । |
| ■ | ଶୁଣ୍ଢରେ ଦୁଇଟି ଆଙ୍ଗୁଠି ପରି ବ୍ୟବସ୍ଥା ଅଛି । | ଶୁଣ୍ଢରେ ଗୋଟିଏ ଆଙ୍ଗୁଠି ପରି ବ୍ୟବସ୍ଥା ଅଛି । |
| ■ | ଉଭୟ ଅଣ୍ଡିରା ଓ ମାଈ ହାତୀଙ୍କର ଦାନ୍ତ ଥାଏ । | ସାଧାରଣତଃ ଅଣ୍ଡିରା ହାତୀଙ୍କର ହିଁ ଦାନ୍ତ ଉଠିଥାଏ । |
| ■ | ପୋଷା ମନାଇବା ସହଜ ନୁହେଁ । | ସହଜରେ ପୋଷା ମନା ଯାଇପାରେ । |

ଏସୀୟ ହାତୀଙ୍କୁ ଅନେକ ଜାଗାରେ ପୋଷା ମନାଯାଇଥାଏ । କିନ୍ତୁ ଆଫ୍ରିକୀୟ ହାତୀଙ୍କୁ ତାଲିମ ଦେବା ଦିଗରେ ବିଶେଷ ଆଗ୍ରହ ଦେଖାଯାଇନାହିଁ । ଏହା ଏକ ଭୁଲ ଧାରଣାକୁ ବି ଜନ୍ମ ଦେଇଛି ଯେ ଆଫ୍ରିକୀୟ ହାତୀଙ୍କୁ ପୋଷା ମନାଯାଇ ନ ପାରେ । କିନ୍ତୁ

Digitized by srujanika@gmail.com

ଇଉରୋପୀୟ ଇତିହାସରେ ଲେଖାଅଛି ଯେ, ଅନେକ କ୍ଷେତ୍ରରେ ଆଫ୍ରିକୀୟ ହାତୀଙ୍କୁ ତାଲିମ ଦିଆଯାଇ ଯୁଦ୍ଧକାମରେ ବ୍ୟବହାର କରାଯାଇଛି । ଏସୀୟ ହାତୀମାନଙ୍କୁ ହଜାର ହଜାର ବର୍ଷ ଧରି ମଣିଷର କାମରେ ଲଗାଯାଇଛି ।

କିଛି ପ୍ରାଣୀ ବିଜ୍ଞାନୀ ଭାରତୀୟ ହାତୀଙ୍କୁ ଦୁଇଟି ଶ୍ରେଣୀରେ ବାଣ୍ଟିଥାନ୍ତି । ତାହା ହେଉଛି : *ଏଲିଫାସ୍ ମାକ୍ସିମସ୍ ଡାଏମେନ୍‌ସିସ୍ ଓ ଏଲିଫାସ୍ ମାକ୍ସିମସ୍ ବେଙ୍ଗାଲେନ୍‌ସିସ୍ ।*

ପ୍ରଥମ ଶ୍ରେଣୀର ହାତୀଗୁଡ଼ିକ ଦକ୍ଷିଣ ଭାରତରେ ଦେଖିବାକୁ ମିଳନ୍ତି । ଏହି ହାତୀଙ୍କ ମଧ୍ୟରୁ ଶତକଡ଼ା 82 ଭାଗ ଅଣ୍ଡିରା ହାତୀଙ୍କର ଦାନ୍ତ ଉଠେ । କିନ୍ତୁ ଖୁବ୍ ବିରଳ କ୍ଷେତ୍ରରେ ଏଗୁଡ଼ିକ ଦେଖିବାକୁ ମିଳିଥାଏ । ଏପରି ହଲେ ଦାନ୍ତର ଓଜନ ହାରାହାରି 57 କି.ଗ୍ରା. ହୋଇଥାଏ (ଏ ଯାଏଁ ମିଳିଥିବା ସବୁଠୁ ଓଜନିଆ ହାତୀ ଦାନ୍ତ ଯୋଡ଼ାର ଓଜନ 77 କି.ଗ୍ରା. ଥିଲା) । ଦାନ୍ତ ଗୁଡ଼ିକର ଲମ୍ବ ହାରାହାରି 2 ମିଟର ହୋଇଥାଏ ।

ଏହି ଦୁଇଟି ଶ୍ରେଣୀରେ ପୁଣି ଆକୃତି, ରଙ୍ଗ, ବ୍ୟବହାର, ବାସ, ଶକ୍ତି, ଦେହ ଗନ୍ଧ, ଖିଆପିଆ ଓ ବିଭିନ୍ନ ରୋଗ ପ୍ରତି ସେମାନଙ୍କ ରୋଗ ରୋଧକ କ୍ଷମତା ବା ରୋଗରେ ପଡ଼ିବାର ସମ୍ଭାବନାକୁ ନେଇ ହାତୀମାନେ ବିଭିନ୍ନ ପ୍ରକାରର ହୋଇଥାନ୍ତି ।

ବାଲ୍ମୀକିଙ୍କ ସମୟରେ ହାତୀମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଉଥିଲା :

- *ଭଦ୍ର* - ଆକାର ଓ ଅନୁପାତରେ ଛୋଟ ।
- *ମନ୍ଦ୍ର* - ଅଙ୍ଗପ୍ରତ୍ୟଙ୍ଗ ବିରାଟକାୟ କିନ୍ତୁ ମାନ୍ଦାଳିଆ ।
- *ମୃଗ* - ପତଳା କିନ୍ତୁ ଶକ୍ତ ।

ଏହାଛଡ଼ା ବିଭିନ୍ନ ଶ୍ରେଣୀର ହାତୀଙ୍କ ମଧ୍ୟରେ ମିଳନ କରାଯାଇ ନୂଆ ନୂଆ କିସମର ସଙ୍କର ହାତୀ ବି ସୃଷ୍ଟି କରାଯାଉଥିଲା ।

*ରାମାୟଣ* ଯୁଗରେ ରାଜାମାନେ ହାତୀ ରଖିବାକୁ ଖୁବ୍ ପସନ୍ଦ କରୁଥିଲେ । ସେମାନେ ହାତୀଙ୍କର ଯତ୍ନ ନେବା ଓ ସେମାନଙ୍କ ବଂଶ ବଢ଼ାଇବା ପାଇଁ ବିଭିନ୍ନ ଅଭୟାରଣ୍ୟ ଓ ପାର୍କ ବନାଉଥିଲେ । ଏଗୁଡ଼ିକର ନାମ ଥିଲା *ନାଗବଣ* । ଭରତ ଯେତେବେଳେ ଚିତ୍ରକୂଟଠାରେ ରାମଚନ୍ଦ୍ରଙ୍କୁ ଭେଟିବାକୁ ଯାଇଥିଲେ, ସେତେବେଳେ ରାମ ତାଙ୍କୁ ନିଜ *ନାଗବଣ* କିପରି ଅଛି ବୋଲି ପଚାରି ବୁଝିଥିଲେ ।

ସେତେବେଳେ ହିମାଳୟ ଓ ବିନ୍ଧ୍ୟ ପର୍ବତଶ୍ରେଣୀର ପାଦଦେଶ ଗୁଡ଼ିକ ହାତୀଙ୍କ ଭୂମି ରୂପେ ବିଖ୍ୟାତ ଥିଲା । ଅଯୋଧ୍ୟା ନଗରୀରେ ଐରାବତ, ମହାପଦ୍ମ, ଅଞ୍ଜନା ଓ ବାମନ ଜାତିର ହାତୀ ସବୁ ରଖାଯାଉଥିଲେ । ଐରାବତ ଓ ଇନ୍ଦ୍ରଶିର ପର୍ବତରୁ ସବୁଠୁ ଉଚ୍ଚ ମାନର ହାତୀ ମିଳୁଥିଲେ । ଦେଖିବାକୁ ଅତି ସୁନ୍ଦର ହୋଇଥିବାରୁ ଏମାନଙ୍କୁ *ପ୍ରିୟଦର୍ଶନ* କୁହାଯାଉଥିଲା । ରାବଣର ହାତୀଶାଳରେ ଅତି ଉଚ୍ଚ ମାନର ହାତୀସବୁ ରହିଥିଲେ – ଯେଉଁମାନେ ଖୁବ୍ ସୁନ୍ଦର ଥିଲେ ଓ ଯୁଦ୍ଧ ପାଇଁ ଉତ୍କୃଷ୍ଟ ତାଲିମ ବି ପାଇଥିଲେ ।

Digitized by srujanika@gmail.com

## ବଣର ରାଜା

ବିରାଟ ଆକାର ଓ ଓଜନ ଯୋଗୁଁ ହାତୀମାନେ ପୃଥିବୀରେ ସବୁଠୁ ବଡ଼ ପ୍ରାଣୀ ରୂପେ ଜଣା ଅଟନ୍ତି । ପ୍ରାଚୀନ ଭାରତରେ ବିଶ୍ୱାସ କରାଯାଉଥିଲା ଯେ ହାତୀମାନେ ଦୀର୍ଘାୟୁ ଅଟନ୍ତି । ଯେଉଁ ମଣିଷମାନେ ସୁସ୍ଥ ଓ ଦୀର୍ଘଜୀବୀ ହେଉଥିଲେ ସେମାନଙ୍କୁ *ଗଜପ୍ରାଣ* ବୋଲି କୁହାଯାଉଥିଲା । ହାତୀ ଥିଲା ଶକ୍ତିର ସଙ୍କେତ । ଯିଏ ଯେତୋଟି ହାତୀଙ୍କୁ କାବୁ କରିପାରୁଥିଲେ, ତାଙ୍କୁ ସେତେ ବଡ଼ ଯୋଦ୍ଧା ରୂପେ ଗଣାଯାଉଥିଲା । ଭୀମସେନଙ୍କର ଦଶସହସ୍ର ହାତୀଙ୍କର ବଳ ଥିଲା ବୋଲି ଧରାଯାଉଥିଲା । ଜଙ୍ଗଲ କାହାଣୀ ଶୁଣାଉଥିବା ଲୋକେ ବିଶ୍ୱାସ କରୁଥିଲେ ଯେ ହାତୀ ହେଉଛି ଜଙ୍ଗଲର ରାଜା । ସାଧାରଣତଃ ସିଂହ ଓ ବାଘ ହାତୀ ପାଇଁ ଚଉଡ଼ା ବାଟ ଛାଡ଼ି ଦେଉଥିଲେ । 275 କି.ଗ୍ରା. ଓଜନର ସିଂହଟିଏ 7 ଟନ୍ ଓଜନର ହାତୀକୁ ବାଟ ଛାଡ଼ି ଦେଉଥିଲା ।

ଗୋଟିଏ ହାତୀର ଓଜନ ପ୍ରାୟ 6,750 କି.ଗ୍ରା. ଯାଏଁ ହୋଇପାରେ । ମହୀଶୂର ରାଜ୍ୟ (ଏହା ଏବେ କର୍ଣ୍ଣାଟକ ରାଜ୍ୟର ଏକ ଅଂଶ)ରେ ଦୁଇଟି ହାତୀଙ୍କ ଓଜନ ଯଥାକ୍ରମେ 7,409 କି.ଗ୍ରା. ଓ 6,854 କି.ଗ୍ରା. ଯାଏଁ ହୋଇଥିଲା । ଏସୀୟ ହାତୀଗୁଡ଼ିକର ଦେହ ପୃଥୁଳକାୟ ଓ ଗୋଡ଼ଗୁଡ଼ିକ ଛୋଟ ହୋଇଥିବା ଯୋଗୁଁ ଏମାନେ ଆଫ୍ରିକୀୟ ହାତୀଙ୍କ ତୁଳନାରେ ଅପେକ୍ଷାକୃତ କମ୍ ବେଗରେ ଚଳପ୍ରଚଳ କରିଥାନ୍ତି । ହାତୀଙ୍କ ବେକ ଛୋଟ ଓ ଅନମ୍ୟ (କଠିନ) ହୋଇଥିବାରୁ ଏହାକୁ ଚଟାପଟ ଏପଟ୍ ସେପଟ କରି ହୁଏନାହିଁ । ଏହି ଜାଗାଟିରେ ହିଁ ମାହୁନ୍ତ ବସିଥାଏ । ଏହାର ମୁଣ୍ଡ ଓ କୁଲାପରିକା କାନ ଦେହରେ ମାଂସ ରଙ୍ଗର ଅନେକ ଦାଗ ଦେଖିବାକୁ ମିଳିଥାଏ ।

ପଥୁରିଆ ରାସ୍ତା ପରି କଠିନ ରାସ୍ତାରେ ଚାଲିଲେ ହାତୀଙ୍କର ମୋଟା ତଳିପା ଖଣ୍ଡିଆ ହୋଇଯାଇପାରେ ଓ ଏଥିରୁ ରକ୍ତ ବାହାରିପାରେ । ଏହି କାରଣରୁ ମାହୁନ୍ତମାନେ ନିଜ ପୋଷା ହାତୀଙ୍କ ପାଇଁ ନରମ ବାଲିଆ ରାସ୍ତାକୁ ପସନ୍ଦ କରିଥାନ୍ତି । ବୟସ ବଢ଼ିବା ସହିତ ହାତୀଙ୍କର ପଛ ପାଦର ତଳିପା ଦବିଯିବାକୁ ଆରମ୍ଭ କରିଥାଏ ।

ବିବର୍ତ୍ତନର ଧାରାରେ ହାତୀଙ୍କର ନାକଟି ବଦଳିଯାଇ ଶୁଣ୍ଢ ରୂପରେ ଏପରି ଆକାରର ହୋଇଯାଇଛି । ଏହା ଯଥେଷ୍ଟ ଟାଣୁଆ, ନମନୀୟ ଓ କାର୍ଯ୍ୟକ୍ଷମ ଏବଂ ଏହାର ଶେଷ ଭାଗରେ ଦୁଇଟି ନାକପୁଡ଼ା ଅଛି । ଏହି ଅଂଶଟି ଖୁବ୍ ନରମ । ତେଣୁ ହାତୀ ଏହାକୁ କୌଣସି କଠିନ ବା ବନ୍ଧୁର କାମରେ ଲଗାଇପାରେ ନାହିଁ । ବିଭିନ୍ନ ଟାଣୁଆ ଓ ଓଜନିଆ ଜିନିଷକୁ ଧରିବା, ଟେକିବା, ଭାଙ୍ଗିବା ଆଦି କାମ କରିପାରୁଥିବା ଏହାର ମାଂସପେଶୀ ଗୁଡ଼ିକ ପ୍ରାୟ 15 ସେ.ମି. ଉଚ୍ଚରେ ରହିଥାଏ ।

ପିଲା ବୟସରେ ହାତୀର ପଛରେ ଥିବା ଲାଞ୍ଜରେ କିଛି ଛୋଟ ଛୋଟ ନରମ ବାଳ ରହିଥାଏ । ବୟସ ବଢ଼ିବା ସାଙ୍ଗକୁ ବାଳଗୁଡ଼ିକ ଟାଣ ଓ ଲମ୍ବା ହୋଇଚାଲେ ଓ ଗୋଛାଏ ତାର ପରି ଦେଖାଯାଏ ।

ତା'ର କାନ ଓ ନଖର ଅବସ୍ଥାକୁ ଲକ୍ଷ୍ୟ କରି ଗୋଟିଏ ହାତୀର ହାରାହାରି ବୟସକୁ

Digitized by srujanika@gmail.com

ଅନୁମାନ କରିହୁଏ । ଛଅସାତ ବର୍ଷ ବୟସ ହେବା ଯାଏଁ ସେମାନଙ୍କର କାନଗୁଡ଼ିକ ସିଧା ଥାଏ । ଏହାପରେ କାନ ପରଦାର ଉପରଭାଗ ତଳକୁ ଝୁଲି ପଡ଼ିବାକୁ ଆରମ୍ଭ କରେ । 30 ବର୍ଷ ବେଳକୁ, ପୂରା କାନଦୁଇଟି ତଳକୁ ଝୁଲି ରହିଥାଏ । ବୁଢ଼ା ବୟସ ବେଳକୁ କାନ ପରଦାଗୁଡ଼ିକ ଫାଟିଯାଏ । ପାକଳ ବୟସ ବେଳକୁ ହାତୀଙ୍କ କାନର ତଳ ଭାଗଗୁଡ଼ିକ ରୁଗ୍‌ଣ ହୋଇ ଢିଲା ଓ ଶିଥିଳ ହୋଇପଡ଼େ ।

ଭାରତୀୟ ହାତୀଙ୍କ ମଧ୍ୟରେ ଅଣ୍ଡିରା ହାତୀଗୁଡ଼ିକ 246 ସେ.ମି.ରୁ 276 ସେ.ମି. ଯାଏଁ ଉଚ୍ଚ ହୋଇଥାନ୍ତି । ମାଈ ହାତୀଗୁଡ଼ିକ 182 ସେ.ମି.ରୁ 246 ସେ.ମି. ଯାଏଁ ଉଚ୍ଚ ହୋଇଥାନ୍ତି । ଅତି ବିରଳ କ୍ଷେତ୍ରରେ ଦନ୍ତା ହାତୀମାନେ 319 ସେ.ମି. ଯାଏଁ ଉଚ୍ଚ ହୋଇଥାନ୍ତି; କିନ୍ତୁ ଅଣ୍ଡିରା ହାତୀ 335 ସେ.ମି. ଓ ମାଈ ହାତୀ 275 ସେ.ମି. ଯାଏଁ ଉଚ୍ଚ ହୋଇଥିବାର ପ୍ରମାଣ ରହିଛି । ହାତୀର ଉଚ୍ଚତାକୁ ସଠିକ ଭାବରେ ମାପିବା ପାଇଁ ଏହାର ଚାରିଗୋଡ଼କୁ ପାଖାପାଖି ରଖି ଏହାକୁ ସିଧା ଭାବରେ ଠିଆ କରାଯାଏ ଓ ଏହାର କାନ୍ଧଯାଏଁ ଉଚ୍ଚତାକୁ ମପାଯାଏ । ହାତୀଙ୍କ ସମ୍ପର୍କୀୟ ଲୋକକଥା ଜାଣିଥିବା ଲୋକେ ବିଶ୍ୱାସ କରନ୍ତି ଯେ ସାଧାରଣତଃ ପୋଷା ହାତୀଙ୍କ ଠାରୁ ବଣୁଆ ହାତୀଗୁଡ଼ିକ ଅଧିକ ଉଚ୍ଚ ହୋଇଥାନ୍ତି ।

ଏହା ଲକ୍ଷ୍ୟ କରାଯାଇଛି ଯେ ଭୂଇଁ ଠାରୁ କାନ୍ଧ ଯାଏଁ ଗୋଟିଏ ହାତୀର ଉଚ୍ଚତା ଏହାର ଗୋଟିଏ ଆଗ ଗୋଡ଼ର ମୋଟେଇର ପ୍ରାୟ ଦୁଇଗୁଣ ହୋଇଥାଏ । ଏହି ସୂତ୍ରଟିକୁ ପ୍ରୟୋଗ କରି ବିଭିନ୍ନ ବଣୁଆ ହାତୀଙ୍କ ପାଦ ଚିହ୍ନରୁ ସେମାନଙ୍କ ହାରାହାରି ଉଚ୍ଚତାକୁ ଅନୁମାନ କରାଯାଇଥାଏ । ଏହା କେବଳ ଏକ ହାରାହାରି ଧାରଣା ଦେଇଥାଏ କାରଣ ମଣିଷ ବା ଅନ୍ୟଜୀବଙ୍କ ପରି କେତେକ ହାତୀଙ୍କର ଗୋଡ଼ ଅନ୍ୟ ହାତୀଙ୍କ ତୁଳନାରେ ସରୁଆ ବା ମୋଟା ହୋଇଥାଏ ।

ସାର୍ ଉଇଲିୟମ୍ ଗୋଉର୍ସ ନାମକ ଉଗାଣ୍ଡା ଦେଶର ଜଣେ ରାଜ୍ୟପାଳ ଥରେ ଗୋଟିଏ ଆଫ୍ରିକୀୟ ହାତୀର ଉଚ୍ଚତାକୁ ଭୂମିରୁ କାନ୍ଧଯାଏଁ 365 ସେ.ମି. ବୋଲି ମାପିଥିଲେ । ଏହା ଏଯାଏଁ ଏକ ରେକର୍ଡ ରୂପେ ରହିଆସିଛି ।

ଜୀବ ବିଜ୍ଞାନ ଦୃଷ୍ଟିରେ ଦେଖିଲେ ଅଣ୍ଡିରା ହାତୀଙ୍କର ଦାନ୍ତ ହେଉଛି ଆଗକୁ ବାହାରି ଆସିଥିବା ଉପରର ଛେଦନ ଦାନ୍ତ । ମାଈ ହାତୀଙ୍କର ଏହି ଦାନ୍ତ ଦୁଇଟି ଅଳ୍ପ ପରିମାଣରେ ଉପରକୁ ଉଠିଥାଏ । କେତେକ ଅଣ୍ଡିରା ହାତୀଙ୍କର ଜମା ଦାନ୍ତ ନଥାଏ । ଏ ପ୍ରକାରର ହାତୀ ଭାରତରେ ଖୁବ୍ କମ୍ ଦେଖାଯାଆନ୍ତି । ଏମାନେ ସାଧାରଣତଃ ଶ୍ରୀଲଙ୍କାରେ ଦେଖାଯାଇଥାନ୍ତି । ଦନ୍ତା ହାତୀଙ୍କର ବଂଶଧରମାନଙ୍କର କେତେକ କ୍ଷେତ୍ରରେ ଦାନ୍ତ ଉଠି ନ ପାରେ । ସେହିପରି ଦାନ୍ତ ବିହୀନ ହାତୀଙ୍କର ବଂଶଧରମାନେ ଦନ୍ତାହାତୀ ହୋଇପାରନ୍ତି ।

ହାତୀ ଛୁଆଥିଲା ବେଳେ ଏହାର ଦାନ୍ତ ସରୁଆ ଥାଏ ଓ ଏହା ଉପରେ ଏନାମେଲ୍‌ର ଟାଣୁଆ ଖୋଳପାଟିଏ ରହିଥାଏ । ଛଅ ମାସର ହେଲାବେଳକୁ ଏହି ଦୁଧ ଦାନ୍ତ ଝଡ଼ିପଡ଼େ ଓ ଏହା ଜାଗାରେ ନୂଆ ଦାନ୍ତ ଉଠେ ଓ ଆକାରରେ ବଢ଼ି ଚାଲେ । ପୋଷା ହାତୀଙ୍କର

Digitized by srujanika@gmail.com

ଦାନ୍ତକୁ ପ୍ରତି ଦଶ ବର୍ଷରେ ଥରେ କାଟି ଦିଆଯାଏ । ଏହାଦ୍ୱାରା ହାତୀଠାରୁ ସର୍ବାଧିକ ପରିମାଣର ଦାନ୍ତ ଉଦ୍ଧାର କରାଯାଇଥାଏ ।

ହାତୀର ତଳମାଢ଼ିରେ କୌଣସି ଶ୍ୱାନଦନ୍ତ ବା ଛେଦନ ଦାନ୍ତ ନଥାଏ । କିନ୍ତୁ ଏଠାରେ ବଡ଼ ଆକାରର ଛଅଟି ପେଷକ ଦନ୍ତ ଥାଏ । ଦୁଇ ବର୍ଷ ବେଳକୁ ପ୍ରଥମ ପେଷକ ଦାନ୍ତ ଗଳିପଡ଼େ; ଦ୍ୱିତୀୟ ପେଷକ ଛଅ ବର୍ଷ ବେଳକୁ, ତୃତୀୟ ପେଷକ ନଅବର୍ଷ, ଚତୁର୍ଥ ପେଷକ କୋଡ଼ିଏରୁ ପଚିଶ ବର୍ଷ ବେଳକୁ ଓ ପଞ୍ଚମଟି 60 ବର୍ଷ ବେଳକୁ ପଡ଼ିଥାଏ । ଷଷ୍ଠ ପେଷକ ଦାନ୍ତଟି ଆଜୀବନ ହାତୀର ମାଢ଼ିରେ ଲାଗି ରହିଥାଏ ।

ଆଗ ପଟେ କେବଳ ଶୁଣ୍ଢ ଛଡ଼ା ହାତୀଙ୍କର କୌଣସି ଦାନ୍ତ ନଥାଏ । ହାତୀଟିଏ ଯେତେବେଳେ ଶୋଇବା ପାଇଁ ନଇଁ ଆସେ ସେ ଦାନ୍ତକୁ ତଳେ ଭରା ଦେଇ ଶୋଇଯାଏ । ଏହାଦ୍ୱାରା ଏହା ଘୋରି ହୋଇ ନଷ୍ଟ ହୋଇଯାଏ । ଏହି କ୍ଷତିକୁ ବଞ୍ଚାଇବା ପାଇଁ କେତେଜଣ ହାତୀ ପୋଷାଳୀ ତାଙ୍କ ଦାନ୍ତ ଉପରେ ଲୁହା ଡଙ୍କେଇ କରି ଦେଇଥାଆନ୍ତି ।

ଦାନ୍ତଗୁଡ଼ିକ ନିଶ୍ଚିତ ରୂପେ ହାତୀର ଆତ୍ମରକ୍ଷା ଦିଗରେ ଏକ ଚମତ୍କାର ହତିଆର ରୂପେ କାମ କରିଥାନ୍ତି । କିନ୍ତୁ ସେଗୁଡ଼ିକ ସବୁବେଳେ ଯେ କେବଳ ଆଶୀର୍ବାଦର କାମ କରିଥାନ୍ତି, ତା ଭାବିଲେ ବି ଠିକ୍ ହେବ ନାହିଁ । ବିଶେଷ କରି ଘଞ୍ଚ ଜଙ୍ଗଲରେ ଚଳପ୍ରଚଳ କରିବା ସମୟରେ ସେମାନେ ବିଭିନ୍ନ ଅସୁବିଧାର ବି ସମ୍ମୁଖୀନ ହୋଇଥାନ୍ତି । ଏହି କାରଣ ଯୋଗୁଁ ବଣୁଆ ହାତୀଙ୍କୁ ଧରିବା କାମରେ ଦନ୍ତା ହାତୀଙ୍କୁ କେବେ କାମରେ ଲଗାଯାଇ ନଥାଏ । ସେମାନଙ୍କୁ ଶିକାର କାମରେ ବି ଲଗାଯାଇ ନଥାଏ । ଏପରି କାମ ପାଇଁ ଟାଣୁଆ ମାଈ ହାତୀ ବା ଦାନ୍ତବିହୀନ ଅଣ୍ଡିରା ହାତୀଙ୍କୁ ବଛା ଯାଇଥାଏ ।

ଆସାମରେ ଏକଦା ଟି.ଏଚ୍. ମୋଣ୍ଟେଥ୍ ଗୋଟିଏ ଏକଦନ୍ତବିଶିଷ୍ଟ ଅଣ୍ଡିରା ହାତୀଟିକୁ ଶିକାର କରିଥିଲେ ଯାହାର ଦାନ୍ତଟି 223 ସେ.ମି. ଲମ୍ବା ଥିଲା ଓ ଏହାର ଓଜନ ଥିଲା 30 କି.ଗ୍ରା. । ସି.ଏନ୍. ସଦ୍‌ୱେଲ୍ ଶିକାର କରିଥିବା ଆଉ ଏକ ହାତୀର ଦାନ୍ତ ଦୁଇଟିର ଲମ୍ବ 223 ସେ.ମି. ଓ 220 ସେ.ମି. ଏବଂ ଓଜନ ଯଥାକ୍ରମେ 35 କି.ଗ୍ରା. ଓ 34 କି.ଗ୍ରା. ଥିଲା । ଦକ୍ଷିଣ ଭାରତରେ କର୍ଣ୍ଣେଲ୍ ଏଫ୍. ଏସ୍. ଗିଲେସ୍‌ପି ଗୋଟିଏ ପାଗଳ ହାତୀକୁ ଗୁଳି କରି ମାରିଥିଲେ ଯାହାର ଦାନ୍ତ ଦୁଇଟି ଅଗଆଡ଼କୁ ଛନ୍ଦି ହୋଇଯାଇଥିଲା, ଉଭୟ ଦାନ୍ତର ଲମ୍ବ 275 ସେ.ମି. ଥିଲା । ଏ ଦୁଇଟିର ଓଜନ ଥିଲା 42 କି.ଗ୍ରା. ଓ 41 କି.ଗ୍ରା. । ଦକ୍ଷିଣ ଭାରତରେ ଆର୍.ସି.ମୋରିସ୍ ଶିକାର କରିଥିବା ଆଉ ଏକ ପାଗଳ ହାତୀର ଦାନ୍ତ ଦୁଇଟି ମାଢ଼ିଠାରୁ 46 ସେ.ମି. ଦୂରରେ ପରସ୍ପର ସହ ଛନ୍ଦି ହୋଇ ରହିଥିଲା । ଏ ଦୁଇଟିର ଲମ୍ବ ଥିଲା 223 ସେ.ମି. ଓ 236 ସେ.ମି. ଏବଂ ଓଜନ ଥିଲା ଯଥାକ୍ରମେ 31 କିଲୋ ଓ 28 କିଲୋ ।

ଆନାମଲାଇ ଠାରେ ଗୋଟିଏ ମଲା ହାତୀର ଦାନ୍ତ ଦୁଇଟି 238 ସେ.ମି. ଥିଲା ଓ ଏ ଦୁଇଟିର ଓଜନ ଥିଲା 37 ଓ 41 କିଲୋ ।

ଏସୀୟ ହାତୀଙ୍କ ମଧ୍ୟରେ ରେକର୍ଡ କରିଥିବା ସବୁଠୁ ଲମ୍ବା ଦାନ୍ତ ଦ୍ୱୟର ଦୈର୍ଘ୍ୟ ଥିଲା 267 ସେ.ମି. ଓ 251 ସେ.ମି. । ନିଉୟର୍କର ନାଚୁରାଲ୍ ହିଷ୍ଟ୍ରି ମ୍ୟୁଜିଅମ୍ ଠାରେ

Digitized by srujanika@gmail.com

ଗୋଟିଏ ଆଫ୍ରିକୀୟ ହାତୀର ସବୁଠୁ ଲମ୍ବା ଦାନ୍ତ ଦୁଇଟିକୁ ସାଇତି ରଖାଯାଇଛି । ଏ ଦୁଇଟିର ଲମ୍ବ ହେଉଛି 350 ସେ.ମି. ଓ 335 ସେ.ମି. । ଏ ଦୁଇଟିର ଓଜନ ମିଶି ହୋଇଛି 133 କି.ଗ୍ରା. । ପୂର୍ବରୁ ପ୍ଲିଓସିନ୍ ଓ ପ୍ଲିଷ୍ଟୋସିନ୍ ଯୁଗରେ ଥିବା ଆଦିମ ହାତୀମାନଙ୍କ ବଂଶଧରମାନେ ଏବେ ଶିବାଲିକ୍ ଅଞ୍ଚଳରେ ଦେଖିବାକୁ ମିଳୁଛନ୍ତି । ସେ ସମୟରେ ଏମାନଙ୍କ ଦାନ୍ତ 300 ସେ.ମି. ଯାଏଁ ଲମ୍ବା ହେଉଥିଲା ଓ ଏହାର ମୋଟେଇ ପ୍ରାୟ 68 ସେ.ମି. ପର୍ଯ୍ୟନ୍ତ ହେଉଥିଲା । କଲିକତାର ଜାତୀୟ ସଂଗ୍ରହାଳୟ (ନ୍ୟାସ୍‌ନାଲ୍ ମ୍ୟୁଜିଅମ୍)ଠାରେ ଏହି ସମୟର ଜୀବମାନଙ୍କ ଖପୁରୀ ଓ ଦାନ୍ତର ଜୀବାଶ୍ମ ରଖାଯାଇଛି ।

## ମିଳନ

ଅଣ୍ଡିରା ହାତୀଟିଏ 25 ବର୍ଷ ବୟସ ବେଳକୁ ପୂରା ବଢ଼ି ସାରିଥାଏ । ମାଈ ହାତୀମାନେ 15 ବର୍ଷ ବୟସ ବେଳକୁ ଛୁଆ ଜନ୍ମ କରିବାର ନଜିର ରହିଛି । ଏହି ବୟସରେ ପହଞ୍ଚିଲା ବେଳକୁ ଅଣ୍ଡିରା ଓ ମାଈ ହାତୀ ସାଥୀ ଖୋଜିବାକୁ ଆରମ୍ଭ କରନ୍ତି ।

ବିଶ୍ୱାସ କରାଯାଏ ଯେ, ଅଣ୍ଡିରା ହାତୀଟିଏ *ମସ୍ତ* ଅବସ୍ଥାରେ ଥିବା ସମୟରେ ମାଈ ହାତୀ ସହ ସହବାସ କରିବାକୁ ସକ୍ଷମ ହୋଇ ନ ଥାଏ । ମୁଁ ଏପରି ଗୋଟିଏ ହାତୀକୁ ଅନୁଧ୍ୟାନ କରିବାର ମଉକାଟିଏ ପାଇଥିଲି । ସେ ଏତେ ଉତ୍ତେଜିତ ହୋଇ ପଡ଼ିଥିଲା ଯେ, ତା' ମୁହଁର ଉଭୟ ପାଖ ଦେଇ *ମସ୍ତ* ତରଳ ଗୁଡ଼ିକ ମୋଟା ଧାରରେ ବୋହି ଚାଲିଥିଲା । ମୁଁ ତିନିଦିନ ଯାଏଁ ଜଙ୍ଗଲରେ ତା'ର ପିଛା କଲି । ଏହି ସମୟରେ ସେ ଅତ୍ୟନ୍ତ ଉତ୍ତେଜିତ ଥିଲା । ତଥାପି ସେ କୌଣସି ମାଈ ହାତୀ ପାଖରେ ପହଞ୍ଚିଥିବାର ମୁଁ ଦେଖିଲି ନାହିଁ ।

ଆଉ ଥରେ ମୁଁ ଗୋଟିଏ ଦାନ୍ତ ବିହୀନ ମାରଣା ହାତୀକୁ ଦେଖିଥିଲି ଯିଏ ଗୋଟିଏ ଅନିଚ୍ଛୁକ ସାଥୀକୁ ମିଳନ ପାଇଁ ବାଧ୍ୟ କରୁଥାଏ । ଏହି ହାତୀଟି ଏତେ ଅଧିକ ଉତ୍ତେଜିତ ଅବସ୍ଥାରେ ଥାଏ ଯେ ତାର *ମସ୍ତ* ତରଳଗୁଡ଼ିକ ଲଗାତାର ତା'ର ମୁହଁ ତଳକୁ ବୋହି ଚାଲିଥାଏ । ସେ ମାଈ ହାତୀଟିକୁ ଆଡ଼ କରିବା କ୍ଷଣି ସେ ତାକୁ ଏଡ଼ି ଦେଉଥାଏ । ତାର ବିରାଟ କାନଗୁଡ଼ିକ ମାଈଟିର ଦେହରେ ଲାଗିଯାଉଥିଲା । ଅଣ୍ଡିରାଟି ଏହି ମିଳନ କାମନାରେ ପାଗଳ ହୋଇ ଉଠିଥାଏ । ସେ ତାକୁ ପଛଆଡୁ ଜାବୁଡ଼ି ଧରୁଥାଏ ଓ ଶୁଣ୍ଢ ସାହାଯ୍ୟରେ ତାକୁ ସ୍ଥିର ରଖିବା ପାଇଁ ଚେଷ୍ଟା ଚଳାଇଥାଏ । ଏଥିରେ ବ୍ୟସ୍ତ ହୋଇ ମାଈ ହାତୀଟି ଭୟରେ ଚିତ୍କାର କରିଚାଲିଲା ।

ଥରେ ସୁନ୍ଦରମାଳା ନାମକ ଆସାମ ଜଙ୍ଗଲ ବିଭାଗର ଗୋଟିଏ ହାତୀ ହଜିଗଲା । ଅନେକ ସପ୍ତାହ ଧରି ତାକୁ ଖୋଜା ଚାଲିଲା । ଷ୍ଟ୍ରେସି ଶେଷରେ ଦିବ୍ରୁ ସଂରକ୍ଷିତ ଜଙ୍ଗଲରେ ପହଞ୍ଚି ଗୋଟିଏ ଦାନ୍ତବିହୀନ ଅଣ୍ଡିରା ହାତୀକୁ ଦେଖିଲେ ଯାହାର ମୁହଁରୁ *ମସ୍ତ* ତରଳ ଝରି ଚାଲିଥିଲା । ତା ପାଖରେ ଗୋଟିଏ ଗେଡ଼ା ମାଈ ହାତୀ ଥିଲା, ଯେ ପାଖ ଅଭୟାରଣ୍ୟରୁ ଖସି ପଳାଇ ଆସିଥିଲା ଓ ଏବେ ବି ନିଜ ଶିକୁଳିକୁ ଭିଡୁଥିଲା । ପି.ଡି. ଷ୍ଟ୍ରେସି ଲେଖିଛନ୍ତି : ମୁଁ ଗୋଟିଏ ଦନ୍ତା ହାତୀ ଉପରେ ବସିଥାଏ । ମୁଁ ସେହି ବଣୁଆ ହାତୀଟିକୁ ଯିବା ପାଇଁ ପୂରା

Digitized by srujanika@gmail.com

ବାଟ ଛାଡ଼ି ଦେଲି । କିନ୍ତୁ ସେ ଆମକୁ ପିଛା କଲା । ମାଈ ହାତୀଟି ତା' ପଛେ ପଛେ ଚାଲିଥାଏ ।'' ଗୋଟିଏ ହାତୀ ଏପରି କେତେଦୂରଯାଏଁ ପିଛା କରିପାରେ, ସେ ସମ୍ପର୍କରେ ଷ୍ଟ୍ରେସିଙ୍କର କୌଣସି ଧାରଣା ନଥିଲା । ''ଆମେ ଯେତେ ଚିତ୍କାର କଲେ ବି ସେ ଆମ ଆଡ଼କୁ ଆଗେଇ ଆସିଲା । ତା'ର ଉଦ୍ଦେଶ୍ୟ କ'ଣ ମୁଁ କିଛି ବୁଝିପାରୁ ନ ଥାଏ, କିନ୍ତୁ ସେ ନିଶ୍ଚିତ ରୂପେ ଜଣାଇ ଦେଉଥାଏ ଯେ ମୁଁ ଚଢ଼ିଥିବା ହାତୀଟି ଉପରେ ସେ କ୍ଷୁବ୍ଧ, କାରଣ ତାକୁ ସେ ନିଜର ପ୍ରତିଦ୍ୱନ୍ଦୀ ମନେ କରୁଥାଏ । ଏଥିରେ ମୋ ମାହୁନ୍ତ ଏତେ ଡରିଗଲା ଯେ ମୁଁ ଦାନ୍ତ ବିହୀନ ହାତୀଟି ଆଡ଼କୁ ଗୁଳି ଚଳାଇବାକୁ ବାଧ୍ୟ ହେଲି । ଗୁଳିଟି ତା'ର ମୁଣ୍ଡ ପାଖ ଦେଇ ଚାଲିଗଲା । ଶେଷରେ ସେ ପଛକୁ ମୁହାଁଇଲା, କିନ୍ତୁ ଏହାକୁ ସେ ଡରରେ ନକରି ବେଶ୍ ମର୍ଯ୍ୟାଦାର ସହ ହିଁ ପ୍ରଦର୍ଶନ କଲା ।''

ମହୀଶୂର (ଏବେକାର କର୍ଣ୍ଣାଟକ)ରେ ଥରେ ଜଙ୍ଗଲ ବିଭାଗର ଗୋଟିଏ ଗର୍ଭିଣୀ ହାତୀ ଉପରେ ଗୋଟିଏ ଉତ୍ତେଜିତ ଅଣ୍ଡିରା ହାତୀର ଆଖି ପଡ଼ିଲା । ସେ ଆଗେଇବା ପ୍ରତି ମାଈ ହାତୀଟି କିଛି ପ୍ରତିକ୍ରିୟା ପ୍ରକାଶ ନ କରିବା ଦେଖି ସେ ଏତେ ଜୋର୍‌ରେ ରାଗିଗଲା ଯେ ତାକୁ ସେ ଆକ୍ରମଣ କଲା ଓ ଦାନ୍ତରେ ଥରକୁ ଥର ଭୁଷି ତାକୁ ପ୍ରାଣରେ ମାରି ଦେଲା ।

ମୋର ଜଣେ ବିହାରୀ ସାଙ୍ଗ ଅଛି, ଯିଏ ହାତୀଙ୍କ ସହିତ ବିଶେଷ କାମ କରିଥିବା ଏକ ପରିବାରରୁ ଆସିଛି । କୌଣସି ଧନୀ ଲୋକ ସେ କାଳରେ ହାତୀ କିଣିବାକୁ ଚାହିଁଲେ ତା' ଅଜାଙ୍କ ପରାମର୍ଶ ନେଉଥିଲେ । ଥରେ ମୁଁ ଦଳେ ଲୋକଙ୍କୁ ହାତୀଙ୍କ ମିଳନ ସମ୍ପର୍କରେ ମୋର ଏକ ଅନୁଭୂତି ଶୁଣାଉଥିଲି । ସେତେବେଳେ ମୋର ସେହି ସାଙ୍ଗ ଜଣକ ସେଠାରେ ଥିଲା । ସେ ତୀବ୍ରଭାବରେ ମୋ କଥାକୁ ପ୍ରତିବାଦ କରି କହିଲା, ତାଙ୍କ ଗାଁରେ ସାନ ପିଲାଟି ବି ଜାଣେ ଯେ, ପାଣି ଭିତର ଛଡ଼ା ଆଉ କେଉଁଠି ବି ହାତୀମାନେ ସହବାସ କରନ୍ତି ନାହିଁ । ଏହି ପାରମ୍ପରିକ ବିଶ୍ୱାସକୁ ବୁଝାଇ କୁହାଯାଏ ଯେ, ଯେହେତୁ ପାଣି ଭିତରେ ଗୋଟିଏ ହାତୀର ଓଜନ ବେଶ୍ କମିଯାଏ, ତେଣୁ ବିଶେଷ ଚାପର ସମ୍ମୁଖୀନ ନ ହୋଇ ମାଈ ହାତୀଟି ସୁବିଧାରେ ଅଣ୍ଡିରା ହାତୀଟିର ଓଜନକୁ ସହିଯାଇପାରେ । କିନ୍ତୁ ଭୂମି ଉପରେ ଏହା ସମ୍ଭବପର ନୁହେଁ । ଅନ୍ୟମାନେ ଯେଉଁମାନେ ହାତୀଙ୍କ ବିଷୟରେ ବିଶେଷ ଜାଣିଥାନ୍ତି ଭାବନ୍ତି ଯେ ହାତୀଙ୍କ ମିଳନ ଦେଖିବା ଅତି ଅଶୁଭ ଅଟେ । ଏହା ଭବିଷ୍ୟତରେ ଅଘଟଣର ସୂଚନା ଦିଏ ।

ରୋମର ଲେଖକ ପ୍ଲିନୀ (23-79 ଖ୍ରୀଷ୍ଟାବ୍ଦ) ବିଶ୍ୱାସ କରୁଥିଲେ ଯେ, ହାତୀମାନେ ଗୋପନରେ ସହବାସ କରନ୍ତି । ଭାରତରେ ମଧ୍ୟ ଏହି ବିଶ୍ୱାସ ପ୍ରଚଳିତ ଅଛି । କେବଳ ସାଧାରଣ ଲୋକ ନୁହନ୍ତି, ହାତୀ ପୋଷିଥିବା ଲୋକ ବି ଏହି କଥା କହନ୍ତି । ସେମାନେ କହନ୍ତି ଯେ ପ୍ରେମ କରୁଥିବା ସମୟରେ ହାତୀମାନେ ପାଖରେ ଆଉ କୌଣସି ହାତୀଙ୍କ ଉପସ୍ଥିତିକୁ ବି ସହ୍ୟ କରିପାରନ୍ତି ନାହିଁ । କିଛି ଲେଖକ, ଯେଉଁମାନେ ଏ ବିଷୟରେ ଠିକ୍ ରୂପେ ଜାଣିବା ନିହାତି ଜରୁରୀ, ସେମାନେ ବି ଏହାକୁ ସମର୍ଥନ କରି କହନ୍ତି ଯେ ହାତୀମାନେ ମଣିଷଙ୍କ ପରି ସହବାସ କରିଥାନ୍ତି । ଏହିପରି ଧାରଣା ଓ ଉପସ୍ଥାପନାର ମୂଳ କାରଣ ହେଉଛି ହାତୀର ଆକାର ।

Digitized by srujanika@gmail.com

କିନ୍ତୁ ଏ ଦିଗରେ ମୋର ଅନୁଭୂତି ଠିକ୍ ଓଲଟା । ଅନ୍ୟ ହାତୀଙ୍କ ଉପସ୍ଥିତିରେ ହାତୀମାନେ ସହବାସ କରିବା ମୁଁ ନିଜେ ଦେଖିଛି । ଗୋଟିଏ ଘଟଣାରେ ସହବାସ କରୁଥିବା ହାତୀଦୁଇଟି ଦଳର ଆଗରେ ରହିଥିଲେ । ଏକ ମିନିଟ୍ ଯାଏଁ ଅଣ୍ଡିରା ହାତୀଟି ମାଈ ହାତୀଟି ଉପରେ ଚଢ଼ିଥିବାର ମୁଁ ଦେଖିଛି । ଏ ସୁଯୋଗଟିକୁ ହରାଇବାର ନ ଥିଲା । ଆମେ ସମସ୍ତେ ଯଥେଷ୍ଟ ଫଟୋ ଉଠାଇଲୁ । ଆମେ କହିପାରିବୁ ନାହିଁ ଆମ ଦେଖିବାର କେତେ ସମୟ ଆଗରୁ ସେମାନେ ଏଥିରେ ମତ୍ତ ଥିଲେ । କୋଣାର୍କ ମନ୍ଦିରର କାନ୍ଥ ଖୋଦେଇରେ ହାତୀଙ୍କ ସହବାସର ଅନେକ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ସାଇତା ହୋଇ ରହିଛି । ମୋର ନିଜ ଅଧ୍ୟୟନ ଗୁଡ଼ିକ ବି ଏହା ସହିତ ମେଳ ଖାଉଛି ।

ଉତ୍ତର ଭାରତରେ ପୋଷା ହାତୀମାନଙ୍କ ସହବାସ କରିବାର କେବେ ଦେଖିବାକୁ ମିଳେନାହିଁ । କିନ୍ତୁ ଆସାମରେ ହାତୀମାନଙ୍କର ପ୍ରଣୟର ଦୃଶ୍ୟ ଏକ ଅସାଧାରଣ ଦୃଶ୍ୟ ନୁହେଁ । ଦକ୍ଷିଣ ଭାରତ ଓ ଆସାମରେ ଏପରି ବି ଘଟଣା ଘଟିଥିବାର ନଜିର ରହିଛି, ଯେଉଁଥିରେ ପୋଷା ମାଈ ହାତୀମାନେ ଉତ୍ତେଜିତ ହୋଇ ଅନ୍ୟ ବଣୁଆ ଦନ୍ତାହାତୀଙ୍କ ସହିତ ଖସି ପଳାଇଛନ୍ତି ଓ ମିଳନ ପରେ ପୁଣି ଘରକୁ ଫେରି ଆସିଛନ୍ତି ।

ମୋଟ ଉପରେ ମନେହୁଏ ଯେ, ଅନ୍ୟ ଜୀବଙ୍କ ପରି ହିଁ ହାତୀମାନେ ସହବାସ କରିଥାନ୍ତି । ଏଥିରେ ଏତିକି କେବଳ ଫରକ ରହିଥାଏ ଯେ, ଗୋଟିଏ ମାଈ ହାତୀ ସହ ମିଳନ ପାଇଁ ଅଣ୍ଡିରା ହାତୀଙ୍କ ମଧ୍ୟରେ ଲଢ଼େଇ ହୋଇନଥାଏ । ଏହା ଯଥେଷ୍ଟ ଶାନ୍ତିର ସହ ଓ ଭଲ ବୁଝାମଣା ମଧ୍ୟରେ ଶେଷ ହୁଏ । ଷ୍ଟ୍ରେସି ଓ ତାଙ୍କର କିଛି ସହଯୋଗୀ ଥରେ ତାଙ୍କ କୁଡ଼ିଆରୁ ଦଳେ ବଣୁଆ ହାତୀଙ୍କର ରାସକ୍ରୀଡ଼ାକୁ ଦେଖି ପାରିଥିଲେ । ଗୋଟିଏ ଉତ୍ତେଜିତ ମାଈ ହାତୀସହ ଦଳେ ଅଣ୍ଡିରା ହାତୀ, ଜଣକ ପରେ ଜଣେ ହୋଇ, ସହବାସ କରିଥିଲେ । ଏଥିରେ ଜଣେ ବିଫଳ ହେଲେ ଆଉ ଜଣେ ଚେଷ୍ଟା କରୁଥିଲା । ସେମାନଙ୍କ ମଧ୍ୟରେ କୌଣସି ଅଧୀରତା, ଈର୍ଷା ବା ଲଢ଼େଇ ଦେଖିବାକୁ ମିଳି ନ ଥିଲା । ଗୋଟିଏ ବିଚିତ୍ର କଥା ହେଉଛି ଅଣ୍ଡିରା ହାତୀଙ୍କ ମଧ୍ୟରେ ସବୁଠୁ ଟାଣୁଆ ହାତୀ ଗୁଡ଼ିକ ଏହି ସହବାସ ଦାୟିତ୍ୱ ତୁଲାଇବାରେ ସବୁଠୁ ଦୁର୍ବଳ ମନେ ହୋଇଥିଲେ ।

ଅନେକ ବିଶେଷଜ୍ଞ ଦଳରେ ଥିବା ହାତୀଙ୍କ ମଧ୍ୟରେ ସହବାସକୁ ସମର୍ଥନ କରି ନ ଥାନ୍ତି । ସେମାନେ ଭାବନ୍ତି ଯେ ଏହି କ୍ରିୟାରୁ ହାତୀଙ୍କ ମଧ୍ୟରେ ଲଢ଼େଇ ହୋଇ ଅନ୍ୟ ହାତୀମାନେ ଆହତ ହୋଇପାରନ୍ତି । ସେମାନଙ୍କ ଚିକିତ୍ସା ଓ ଯତ୍ନ କରିବାରେ ଅନେକ ସମୟ ଲାଗିଯାଇପାରେ ଓ ଅନେକ ପରିମାଣର ଅର୍ଥ ଖର୍ଚ୍ଚ କରିବାକୁ ପଡ଼ିପାରେ । ସେମାନେ ଠିକ୍ ଭାବୁଥାଇ ପାରନ୍ତି ।

ଭାରତ-ଭୂଟାନ୍ ସୀମାରେ ଥିବା ପଶ୍ଚିମବଙ୍ଗର ଜଲ୍‌ଦାପଡ଼ା ଜଙ୍ଗଲରେ ଗୋଟିଏ ପୋଷା ହାତୀ ପଲରେ ଅନେକ ମାଈ ହାତୀ ଥିଲେ । ଜଙ୍ଗଲର ଗୋଟିଏ ବଣୁଆ ଦନ୍ତା ହାତୀ ଏହାର ବାସନା ପାଇଗଲା ଓ ପ୍ରତି ରାତିରେ ଡାକ ଛାଡ଼ିଲା, ମାହୁନ୍ତମାନେ ଏହାକୁ ପସନ୍ଦ କଲେ ନାହିଁ । ହାତୀଟି ପ୍ରତିଥର ସେମାନଙ୍କ ପାଖକୁ ଆସିବା କ୍ଷଣି ସେମାନେ ଚିତ୍କାର

Digitized by srujanika@gmail.com

କରି ଓ ଆକାଶକୁ ଫାଙ୍କା ଗୁଳି ଚଳାଇ ତାକୁ ତଡ଼ିଦେବାକୁ ଚେଷ୍ଟା କଲେ । ଥରେ ସେ ମସ୍ତ ଅବସ୍ଥାରେ ସେ ଶିବିରଟି ମଧ୍ୟକୁ ମଧ୍ୟ ରାତ୍ରରେ ପଶିଆସିଲା ଓ ଦଳରେ ଥିବା ସବୁଠୁ ବଡ଼ ଦନ୍ତା ହାତୀଟିକୁ ଆକ୍ରମଣ କରି ପ୍ରାଣରେ ମାରିଦେଲା । ତା'ର ଭୟଙ୍କର ଦାନ୍ତ ଦୁଇଟି ଶିକାର ହୋଇଥିବା ହାତୀଟିର ତଳ ମାଡ଼ିଦେଇ ଖପୁରୀକୁ ଭେଦି ଯାଇଥିଲା । ଦଳରେ ଥିବା ହାତୀଟି ଅଧିକ ହୃଷ୍ଟପୁଷ୍ଟ ଥିଲା, କିନ୍ତୁ ମଧ୍ୟବୟସ୍କ ଥିଲା ଓ ତା ଗୋଡ଼ରେ ଶିକୁଳି ବନ୍ଧାଥିଲା । ସେ ଅଧିକ କିଛି କ୍ଷତି କରିବା ଆଗରୁ ସଙ୍ଗେ ସଙ୍ଗେ ସମସ୍ତେ ମିଶି ପାଗଳ ହାତୀଟିକୁ ସେଠାରୁ ତଡ଼ି ବାହାର କରିଦେଲେ ।

ଥରେ ଉତ୍ତର ପ୍ରଦେଶର ପଲ୍‌ଟି ଡୁନ୍ ଅଞ୍ଚଳର ଜଙ୍ଗଲ ଇଲାକାରେ ଗୋଟିଏ ମାଈ ହାତୀକୁ ନେଇ ଏକ ଭୟଙ୍କର ଲଢ଼େଇ ଦେଖିବାକୁ ମିଳିଥିଲା । ଏହାଥିଲା 1967 ମସିହା ମାର୍ଚ୍ଚ ୪ ତାରିଖର କଥା । ଗଛ ସବୁ ଛନଛନ ହୋଇ ବଢ଼ି ଚାଲିଥାନ୍ତି । ପବନରେ ବସନ୍ତର ସୁଗନ୍ଧ ଚହଟି ଉଠୁଥାଏ । ଗୋଟିଏ ହାତୀ ପଲରେ ଦଳପତିଟି ଗୋଟିଏ ମାଈ ହାତୀ ସହ ସହବାସ ଚଳାଇଥାଏ । ଏହି ସମୟରେ ଆଉ ଦୁଇଟି ଦନ୍ତା ହାତୀ ତାକୁ ଆହ୍ୱାନ କଲେ । ଜଣକୁ ସେଠାରୁ ହଟାଇ ଦେବାରେ ଦଳପତିକୁ ବିଶେଷ କିଛି ଅସୁବିଧା ହେଲା ନାହିଁ । କିନ୍ତୁ ଆରଟି ଯଥେଷ୍ଟ ହୃଷ୍ଟପୁଷ୍ଟ ଥିଲା । ସେ ଦଳପତିର ପ୍ରତି ପାହାରକୁ ଏକା ଓଜନରେ ଜବାବ ଦେଇ ଚାଲିଲା । ସେତେବେଳେ ସବୁବେଳ ପରି ସେଠାକୁ ଦଳେ ନିୟମିତ ନିରୀକ୍ଷକ ଦଳ ଆସିଥାନ୍ତି । ସେମାନେ ଏକ ସୁରକ୍ଷିତ ସ୍ଥାନରୁ ଏହି ଲଢ଼େଇକୁ ଲକ୍ଷ୍ୟ କରୁଥାନ୍ତି । ହାତୀ ଦୁଇଟି ପରସ୍ପରର ମୁଣ୍ଡକୁ ବାଡ଼େଇ ଆକ୍ରମଣ ଚଳାଇଥାନ୍ତି । ସେମାନଙ୍କ ଦାନ୍ତକୁ ଦାନ୍ତ ବାଡ଼େଇ ହେବାର ଶବ୍ଦରେ ଶାନ୍ତ ପାହାଡ଼ର ନୀରବତା ଭାଙ୍ଗିଯାଇଥାଏ । ଉଭୟ ଯୋଦ୍ଧା ଭୟଙ୍କର ଭାବେ ଉତ୍ତେଜିତ ହୋଇଯାଇଥାନ୍ତି ଓ ପରସ୍ପରକୁ ସାଂଘାତିକ ଭାବେ ଆକ୍ରମଣ କରୁଥାଆନ୍ତି । କେହି ବି ହାର ମାନିବାକୁ ପ୍ରସ୍ତୁତ ନ ଥାଏ । ଜଙ୍ଗଲରେ ବୁଲୁଥିବା ଚିତା, ବାଘ, ବିଲୁଆ, ହେଟା ଆଦି ଜୀବ ନିଶ୍ଚିତ ରୂପେ ଏହି ଲଢ଼େଇକୁ ଅନେଇ ବସିଥିଲେ କିପରି ଗୋଟିଏ ହାତୀ ମରିଗଲେ ସେମାନଙ୍କୁ ଏକ ବଡ଼ ଭୋଜି ମିଳିଯିବ । ଭାଗ୍ୟରେ ଥିଲେ ହିଁ ତ ତାକୁ ଏପରି ସୁଯୋଗ ମିଳିଯିବ ।

କିନ୍ତୁ, କିଛି ସମୟ ପରେ ପ୍ରତିଦ୍ୱନ୍ଦୀଟି ଥକିଗଲା । ଏତିକିବେଳେ ଦଳପତି ତାକୁ କଡ଼ରୁ ଧକାଏ ପକାଇଲା । ଏଥିରେ ସେ ତଳେ ପଡ଼ିଗଲା । ଦଳପତି ଏହି ସୁଯୋଗରେ ତା'ର ଦାନ୍ତକୁ ଆର ହାତୀଟିର ଛାତିରେ ଜୋର୍‌ରେ ଭୁଷିଦେଲା । ଶିକାରଟି ଏକ ପ୍ରାଣଫଟା ଚିତ୍କାର କରି ନିଶ୍ଚଳ ହୋଇଗଲା । ବିଜେତାର ଦାନ୍ତଟି ତା' ଦେହର 60 ସେ.ମି. ଭିତରକୁ ପଶିଯାଇଥିଲା । ତା'ର ଫୁସ୍‌ଫୁସ୍‌ରେ ଏହା ୪ ସେ.ମି. ଗଭୀରର ଗାତ କରି ପକାଇଥିଲା ।

ସେଠାକାର ଆସିଷ୍ଟାଣ୍ଟ୍ ୱାର୍ଡେନ୍ ତିନିଦିନ ପରେ ଯେତେବେଳେ ଏହାର ଏକ ରିପୋର୍ଟ ପ୍ରସ୍ତୁତ କରିବା ପାଇଁ ଘଟଣାସ୍ଥଳରେ ପହଞ୍ଚିଲେ, ସେତେବେଳକୁ ହଜାର ହଜାର ଶାଗୁଣା ହାତୀଟିର କଙ୍କାଳଟିକୁ ଘେରି ବସିଥିଲେ । ଗୋଟିଏ ପଙ୍ଗପାଳ ଦଳ ପରି ସେମାନେ ସେହି ୪00 ମିଟର କ୍ଷେତ୍ରଫଳ ବିଶିଷ୍ଟ ଜାଗାଟିରେ ଛାଇ ଯାଇଥିଲେ । ସେ ଜାଗାଟିର

Digitized by srujanika@gmail.com

ବାୟୁମଣ୍ଡଳରେ ସଢ଼ାଶବର ପ୍ରବଳ ଦୁର୍ଗନ୍ଧ ଭରି ରହିଥିଲା । ହାତୀର ଶବଟି ଜଡ଼େଇ ହୋଇ ପଡ଼ିଥାଏ । ଏହାର ଶୁଣ୍ଢଟି ଦୂରକୁ ଭିଡ଼ି ହୋଇ ଯାଇଥାଏ । ଦାନ୍ତଚୋରମାନେ ବେଶ୍ ଆଗରୁ ଏହାର ଦାନ୍ତକୁ କାଟି ନେଇ ଯାଇଥାନ୍ତି । ମୂଳରେ ଏହାର ମୋଟେଇ 8 ସେ.ମି. ହୋଇଥିଲା । ଏହାର ଦେହରେ ଅନେକ କ୍ଷତ ରହିଥିଲା । ଲାଞ୍ଜ ତଳକୁ ଗୋଟିଏ କ୍ଷତ ପ୍ରାୟ 25 ସେ.ମି. ଗଭୀର ଥିଲା; ଆଗର ଦୁଇଗୋଡ଼ ମଝିରେ ମଧ୍ୟ ଗୋଟିଏ 25 ସେ.ମି. ଗଭୀର କ୍ଷତ ଥିଲା । ବେକର ଡାହାଣକୁ ଗୋଟିଏ 8 ସେ.ମି. ଚଉଡ଼ା କ୍ଷତ ଥିଲା । ମଳଦ୍ୱାରର ଡାହାଣ ପଟକୁ ବି 5 ସେ.ମି. ଚଉଡ଼ାର ଏକ ଗଭୀର କ୍ଷତଥିଲା ।

*ଆଇନ୍-ଇ-ଆକ୍ବରୀ*ରେ ଆବୁଲ୍ ଫାଜ୍‌ଲ୍ ଆକବରଙ୍କ ସମୟର ହାତୀମାନଙ୍କର ଏକ ମଜାଦାର ଘଟଣାର ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି ଯେ, ଦୁଇଟି ଅଣ୍ଡିରା ହାତୀ ଯଦି ଉତ୍ତେଜିତ ଅବସ୍ଥାରେ ଗୋଟିଏ ମାଈ ହାତୀ ପାଇଁ ଲଢ଼େଇ କରୁଥିଲେ, ତେବେ ହାତୀ ଛୁଆଟିଏ ସେମାନଙ୍କ ମଝିକୁ ପଶି ଆସୁଥିଲା । ଗୋଟିଏ ହାତୀ ଏହାକୁ ଧୀରେ ଉଠାଇ ନେଇ ଦୂରରେ ରଖି ଦେଉଥିଲା ଓ ପୁଣି ସେମାନଙ୍କ ମଧ୍ୟରେ ଲଢ଼େଇ ଆରମ୍ଭ ହୋଇଯାଉଥିଲା । ପୁଣି ସେ ଲେଖିଛନ୍ତି ଯେ କୌଣସି ଉତ୍ତେଜିତ ଅଣ୍ଡିରା ହାତୀ ଯଦି ଖସି ପଳାଇଲା, ତେବେ ଏହା ପାଖକୁ କୌଣସି ମଣିଷ ଯିବାକୁ ସାହସ କରୁ ନ ଥିଲେ । ଗୋଟିଏ ମାଈ ହାତୀକୁ ତା' ସାମନାକୁ ନିଆଯାଉଥିଲା । ତାକୁ ଦେଖିଲା କ୍ଷଣି ହାତୀଟି କିଛି ପରିମାଣରେ ନରମି ଯାଉଥିଲା । ଏହା ଫଳରେ ଲୋକେ ତାକୁ ଧରି ନେଉଥିଲେ ।

କେବଳ ଉତ୍ତେଜିତ ଅଣ୍ଡିରା ହାତୀମାନେ ହିଁ ଯେ ସହବାସ କରିଥାନ୍ତି, ଏପରି ଭାବିବା ଠିକ୍ ନୁହେଁ । ଦେଖାଯାଇଛି ଯେ ଜମା ଉତ୍ତେଜିତ ଥିବାର ଲକ୍ଷଣ ପ୍ରକାଶ କରୁ ନ ଥିବା ହାତୀ ବି ସହବାସ କରନ୍ତି । ଦେହରୁ ତରଳ ପଦାର୍ଥ ବହିବାକୁ ଆରମ୍ଭ କଲେ ଅଣ୍ଡିରା ହାତୀଟି ନିଶ୍ଚିତରୂପେ ପ୍ରାପ୍ତବୟସ୍କ ହୋଇସାରିଛି ବୋଲି ଜଣାପଡ଼ିଯାଇଥାଏ ।

ସବୁ ସମୟରେ ସହବାସ ହେବ କି ନାହିଁ ତାହା ମାଈ ହାତୀ ହିଁ ସ୍ଥିର କରିଥାଏ । ସେ ଯଦି ଉତ୍ତେଜିତ ହୋଇ ନ ଥାଏ, ତେବେ ଅଣ୍ଡିରା ହାତୀଟି ଯେତେ ଚେଷ୍ଟା କଲେ ବି ସେ ତାକୁ ନିରାଶ କରିଥାଏ । ମାଈ ହାତୀଟିଏ ଉତ୍ତେଜିତ ହେବାର କୌଣସି ପ୍ରକାଶ୍ୟ ଲକ୍ଷଣ ଦେଖିବାକୁ ମିଳି ନ ଥାଏ । ଏପରି ହୋଇପାରେ ଯେ ମାଈ ହାତୀ ଉତ୍ତେଜିତ ହେଲେ ଏହାର ଦେହରୁ ହୁଏତ କୌଣସି ଗନ୍ଧ ବାହାରିଥାଏ ଯାହା ଅଣ୍ଡିରା ହାତୀକୁ ତା' ଆଡ଼କୁ ଆକର୍ଷିତ କରିଥାଏ । ନଚେତ୍ ଗୋଟିଏ ଅଣ୍ଡିରା ହାତୀ କିପରି ଗୋଟିଏ ଉତ୍ତେଜିତ ମାଈ ହାତୀକୁ ଠାବ କରେ, ତା'ବି ପୁଣି ସମୟ ସମୟରେ ଯଥେଷ୍ଟ ଦୂରରୁ, ତାହା ଆମେ ଜାଣିବା କଷ୍ଟକର ଅଟେ ।

## ଛୁଆ ଜନ୍ମ

ଗୋଟିଏ ଗର୍ଭିଣୀ ହାତୀର ଛୁଆ ଜନ୍ମ କରିବା ସମୟ ଆସି ଯିବାରୁ ଦଳେ ହାତୀ ତା'ଠାରୁ କିଛି ଦୂର ଛାଡ଼ି ତାକୁ ଘେରିକରି ଠିଆ ହେଲେ । ଏହି ସମୟରେ ସବୁ ହାତୀ କେନ୍ଦ୍ରଠାରୁ

Digitized by srujanika@gmail.com

ବାହାର ଆଡ଼କୁ ମୁହଁ କରିଥାନ୍ତି । ସେମାନଙ୍କ ମଧ୍ୟରୁ କେତୋଟି ହାତୀ ପରିଷ୍କାର ଭାବେ ସୂଚାଇ ଦେଉଥାନ୍ତି ଯେ ସେମାନେ ସେଠାକାର ଜଗୁଆଳ କାମ ତୁଲାଉଛନ୍ତି ଓ ସେମାନେ ଯେ କୌଣସି ଅସୁବିଧା ଓ ବିପଦକୁ ସାମନା କରିବା ପାଇଁ ପ୍ରସ୍ତୁତ । ଛୁଆଟି ଜନ୍ମ ହୋଇଯିବା ପରେ ତାଙ୍କ ଆୟୋଜନଟି କେତେକାଂଶରେ ବଦଳି ଗଲା । ଘେରରେ ଥିବା ହାତୀଗୁଡ଼ିକ ଟିକେ କେନ୍ଦ୍ରଆଡ଼କୁ ପାଖେଇ ଆସିଲେ । କିନ୍ତୁ ଏବେ ବି ସେମାନଙ୍କ ମୁହଁଗୁଡ଼ିକ ବାହାର ଆଡ଼କୁ ଥିଲା । ସେମାନେ ଖୁବ୍ ଜୋର୍‌ରେ ଗର୍ଜନ କଲେ, କାନକୁ ହଲାଇବା ସାଙ୍ଗକୁ ଦେହକୁ ବି ଝୁଲାଇବାରେ ଲାଗିଲେ । କେନ୍ଦ୍ର ଭାଗରେ ଛୁଆଟି କଳା ରଙ୍ଗର ଏକ ବଡ଼ ମାଂସ ପିଣ୍ଡୁଳା ପରି ପଡ଼ିଥାଏ । ଛଅଟି ମାଈ ହାତୀ ଓ ପାଞ୍ଚଟି ଛୁଆ ହାତୀ ଧାଈର କାମ ତୁଲାଉଥାନ୍ତି । ଗୋଟିଏ ଯୁବ ହାତୀ 15 ମିଟର ଦୂରରୁ ଏହି ଘଟଣାଟିକୁ ଲକ୍ଷ୍ୟ କରୁଥାଏ । ଏଥର ସେମାନେ ଛୁଆଟିକୁ ଗେଲ କରି ତା'ର ଯତ୍ନ ନେଲେ । କେତୋଟି ହାତୀ ଏହାକୁ ଠିଆ କରିବା ପାଇଁ ଚେଷ୍ଟା କରୁଥାନ୍ତି ।

ଏହି ଘଟଣାଟି କେତୋଟି ଶାଗୁଣାଙ୍କୁ ବି ଆକର୍ଷିତ କଲା । ସେମାନେ ଧୀରେ ଆକାଶରୁ ଓହ୍ଲେଇ ଆସିଲେ, କିନ୍ତୁ ଧାଈର ଭୂମିକା ତୁଲାଉଥିବା ମାଈ ହାତୀଗୁଡ଼ିକ ତାଙ୍କୁ ତାଙ୍କ ପାଖ ମାଡ଼ିବାକୁ ଦେଲେ ନାହିଁ । ସେମାନେ କାହାକୁ ବି ପାଖରେ ପୂରାଇ ଦେଉ ନ ଥାନ୍ତି । କେବଳ ଗୋଟିଏ ଅଣ୍ଡିରା ହାତୀକୁ ସେମାନେ 'ଏନ୍ତୁଡ଼ିଶାଳ' ଭିତରକୁ ଆସିବାକୁ ଦେଲେ ।

ପ୍ରାୟ 10 ମିନିଟ୍ ଧରି ସେମାନଙ୍କ ଗର୍ଜନ ଓ କୋଳାହଳ ଲାଗି ରହିଲା । ଏହି ଆନନ୍ଦ ଉଲ୍ଲାସ ପରେ ପ୍ରାୟ ଅଧଘଣ୍ଟା ଯାଏଁ ସବୁକିଛି ଶାନ୍ତ ହୋଇଗଲା । ଧାଈ କାମ ତୁଲାଉଥିବା ମାଈ ହାତୀମାନେ ନିଜ ନିଜ ଛୁଆଙ୍କ ସହିତ ଘେରରୁ ବାହାରି ଆସିଲେ । ଏଥରର କାମରେ ତାଙ୍କର ଆଉ କିଛି କରିବାର ନଥିଲା । କେବଳ ଗୋଟିଏ ମାଈ ହାତୀ ଓ ତା'ର ଛୁଆ ହିଁ ମା' ହାତୀ ଓ ତା'ର କଅଁଳା ଛୁଆଟି ପାଖରେ ରହିଥିଲେ ।

ଛୁଆଟି ଓଦା ଓ ଅଠାଳିଆ ଥିଲା । ଏହାର ଦେହରେ, ବିଶେଷ କରି ମୁଣ୍ଡରେ ବାଳ ଭରି ରହିଥିଲା । ସେ ଏ ଯାଏଁ ଠିଆ ହୋଇପାରୁ ନଥିଲା । ମା' ହାତୀ, ଧାଈ ହାତୀ ଓ ତା'ର ଛୁଆ ମିଶି ଏହି ନୂଆ ଛୁଆଟିକୁ ଠିଆ କରାଇବା ପାଇଁ ବାରମ୍ବାର ଚେଷ୍ଟା ଚଳାଇଥାନ୍ତି । ପ୍ରତି ଥର ସେ ଧୀରେ ଧୀରେ ଉଠିବା ପରେ ପଡ଼ି ଯାଉଥାଏ । ଏହା କେତେ ଘଣ୍ଟା ଧରି ଚାଲୁ ରହିଲା । ଏଥର ଧାଈ ହାତୀ ସେଠାରୁ ବାହାରିଗଲା । ସେ ତା' ଦାୟିତ୍ୱ ଯଥା ସମ୍ଭବ ଚେଷ୍ଟା କରି ତୁଲାଇଥିଲା । ତେଣୁ ସନ୍ତୋଷର ସହ ସେ ଯାଇ ହାତୀ ପଲରେ ମିଶିଗଲା ।

କିନ୍ତୁ ଆଉ ହାତୀ ଛୁଆଟି ଏଯାଏଁ ତା' ଚେଷ୍ଟାରୁ ଓହରି ନଥିଲା । ସେ ନୂଆ ଛୁଆର ପେଟ ତଳେ ନିଜ ଶୁଣ୍ଢକୁ ପୂରାଇ ତାକୁ ଉପରକୁ ଟେକିବାକୁ ଚେଷ୍ଟା ଚଳାଇଥିଲା । ଶେଷରେ ତା ପରିଶ୍ରମର ଫଳ ମିଳିଲା । ଏଥର ଛୁଆଟି ଠିଆ ହୋଇ ନିଜ ଗୋଡ଼ରେ ନିଜେ ଚାଲିବାକୁ ଚେଷ୍ଟା କଲା ଓ ଆଗପଟକୁ ମୁହଁ ମାଡ଼ି ପଡ଼ିଗଲା । କିନ୍ତୁ ସେମାନେ ଚେଷ୍ଟା କରି ଚାଲିଲେ । ଏ ଯାଏଁ ମା'ର ରକ୍ତ ବୋହୁଥାଏ । ପ୍ରାୟ ଦୁଇଘଣ୍ଟା ପରେ ତା'ର ଫୁଲଟି ବାହାରି ଆସିଲା । ସେ ଶୁଣ୍ଢରେ

Digitized by srujanika@gmail.com

ଏହାକୁ ଭିଡ଼ି ବାହାର କରିଦେଲା, ଏହାର ବାହାର ଅଂଶକୁ ଗିଳିଦେଲା ଓ ବଳକା ଅଂଶକୁ ଛାଡ଼ିଦେଲା ।

ସାନ ଛୁଆଟି ନିଜ ଗୋଡ଼ରେ ଠିକ୍ ଭାବରେ ଠିଆ ହେବା କ୍ଷଣି ସହାୟକ ହାତୀ ଛୁଆଟି ଉଚ୍ଚ ସ୍ୱରରେ ଗର୍ଜନ କଲା ଓ ସେଠାରୁ ବାହାରିଗଲା ।

ଦେଖାଯାଇଛି ଯେ ପୋଷା ଯାଇଥିବା ହାତୀମାନଙ୍କର ଛୁଆ ଜନ୍ମହାର ଅପେକ୍ଷାକୃତ କମି ଯାଇଥାଏ । ଇଉରୋପରେ ପୋଷା ଯାଇଥିବା କୌଣସି ଆଫ୍ରିକୀୟ ହାତୀ ବୋଧହୁଏ କେବେ ଛୁଆ ଜନ୍ମ ଦେଇ ନାହାନ୍ତି । ପ୍ରଥମ ଥର ପାଇଁ ଲଣ୍ଡନ ଚିଡ଼ିଆଖାନାରେ 1903 ମସିହାରେ ଗୋଟିଏ ଏସୀୟ ହାତୀ ଛୁଆ ଜନ୍ମ ଦେଇଥିଲା । ଆଗରୁ ଏହି ମାଈ ହାତୀଟି ଗୋଟିଏ ସର୍କସ୍‌ରେ ଥିଲା । ଦୁଃଖର କଥା ଯେ ଛୁଆଟି ଜନ୍ମର ଅଳ୍ପ ସମୟ ପରେ ମରିଯାଇଥିଲା । ଆପଣ ଏବେ ବି ଏହି ଛୁଆଟିର ସୁରକ୍ଷିତ କଙ୍କାଳକୁ ସାଉଥ୍ କେନ୍‌ସିଙ୍ଗଟନ୍ ଠାରେ ଥିବା ଲଣ୍ଡନ୍ ନାଚୁରାଲ୍ ହିଷ୍ଟ୍ରି ମ୍ୟୁଜିଅମ୍‌ରେ ଦେଖିପାରିବେ । କୋପେନ୍ ହାଗେନ୍‌ର ଜାର୍ଡିନ୍ ଡି ଏକ୍ଲିମେସନ୍‌ରେ ବି ଏପରି ଏକ ହାତୀ ଛୁଆ ଜନ୍ମ ନେଇଥିଲା, ଏହାର ମା' 1907 ମସିହାରେ ଆଉ ଏକ ଛୁଆକୁ ବି ଜନ୍ମ ଦେଇଥିଲା ।

ଏ ଯାଏଁ ଗୋଟିଏ କଥା ପରିଷ୍କାର ଜଣାପଡ଼ିନାହିଁ ଯେ, ହାତୀ କେତେଦିନ ଗର୍ଭଧାରଣ କରିଥାଏ । ଆକବରଙ୍କ ସମୟରେ ବିଶ୍ୱାସ କରାଯାଉଥିଲା ଯେ ଏହି ସମୟ ସୀମା 18ଟି ଚାନ୍ଦମାସ ଅଟେ । ଆଜିର ହିସାବ କହେ ଯେ ଅଣ୍ଡିରା ଛୁଆ କ୍ଷେତ୍ରରେ ଏହା ସମୟ ସୀମା 22 ମାସ ଓ ମାଈ ଛୁଆଙ୍କ କ୍ଷେତ୍ରରେ ଏହା 20 ମାସ ହୋଇଥାଏ । ହାତୀ ପାଳକମାନଙ୍କ ମତରେ ଏହି ସମୟରେ ଯଥେଷ୍ଟ ଫରକ ଦେଖିବାକୁ ମିଳିଥାଏ । 17 ମାସରୁ ଆରମ୍ଭ କରି 2 ବର୍ଷ ଯାଏଁ ହାତୀମାନେ ଗର୍ଭଧାରଣ କରିଥାନ୍ତି ବୋଲି ଶୁଣିବାକୁ ମିଳେ । ମାଈ ହାତୀ ପ୍ରାୟ 30 ମାସ ବ୍ୟବଧାନରେ ନିୟମିତ ଛୁଆ ଜନ୍ମ କରିଥାନ୍ତି ।

ସାଧାରଣତଃ ଥରକେ ଗୋଟିଏ ଛୁଆ ଜନ୍ମ ଦେଇଥାଏ । କେତେକ କ୍ଷେତ୍ରରେ ଯାଆଁଳା ଛୁଆ ବି ଜନ୍ମ ଦେଇଥାନ୍ତି କିନ୍ତୁ ଏହା ବିରଳ କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ନୂଆରେ ଜନ୍ମ ନେଇଥିବା ଛୁଆଟିଏ ହାରାହାରି ପ୍ରାୟ 83 ସେ.ମି. ଉଚ୍ଚ ଓ 90 କି.ଗ୍ରା. ଓଜନିଆ ହୋଇଥାଏ ।

1961 ମସିହା ଅକ୍ଟୋବର 26 ତାରିଖରେ ମିଆଁମାର ଠାରେ ଗୋଟିଏ ମାଈ ହାତୀ ଯାଆଁଳା ଛୁଆଙ୍କୁ ଜନ୍ମ ଦେଇଥିଲା । ଏଥିରୁ ପ୍ରଥମଟି ଅଣ୍ଡିରା ଥିଲା । ଏହା ସକାଳ ସାଢ଼େ ଛଅଟା ବେଳେ ଜନ୍ମ ହୋଇଥିଲା । ଆର ଛୁଆଟି ମାଈ ଥିଲା; ସେ ପ୍ରଥମଟିର ତିନି ଘଣ୍ଟା ପରେ ଜନ୍ମ ହୋଇଥିଲା । ଅଣ୍ଡିରା ଛୁଆଟିର କାନ୍ଧ ଯାଏଁ ଉଚ୍ଚତା 83 ସେ.ମି. ଓ ମାଈଟିର ଉଚ୍ଚତା 80 ସେ.ମି. ଥିଲା । ଏହି ମାଈ ହାତୀଟି ଏହା ଆଗରୁ 1959 ମସିହାରେ ଛୁଆ ଜନ୍ମ କରିଥିଲା । ଦୁଇ ଥର ଛୁଆ ଦେବା ମଧ୍ୟରେ ଏତେ କମ୍ ସମୟର ବ୍ୟବଧାନ ରହିବା ଏକ ବିରଳ ଘଟଣା ଅଟେ ।

1913 ମସିହା ଅକ୍ଟୋବର 27 ତାରିଖରେ ଥାଇଲାଣ୍ଡରେ ଗୋଟିଏ ମାଈ ହାତୀ ତିନୋଟି ଛୁଆଙ୍କୁ ଜନ୍ମ ଦେଇଥିଲା । ସମସ୍ତେ ଅଣ୍ଡିରା ଥିଲେ । ପ୍ରଥମ ଛୁଆଟି ଜନ୍ମରୁ ନିଶ୍ଚଳ ଥିଲା, ଦ୍ୱିତୀୟଟି ଆକାରରେ ଯଥେଷ୍ଟ ଛୋଟ ଥିଲା ଓ ତୃତୀୟଟି ସ୍ୱାଭାବିକ ଥିଲା । ପ୍ରଥମ ଛୁଆ ଦୁଇଟି ନଭେମ୍ବର

Digitized by srujanika@gmail.com

୫ ଓ ୭ ତାରିଖରେ ମରି ଯାଇଥିଲେ । ସେହି ଛୁଆ ଦୁଇଟିକୁ ବଞ୍ଚାଇ ରଖିବା ପାଇଁ ଯଥା ସମ୍ଭବ ଚେଷ୍ଟା କରାଗଲା, କିନ୍ତୁ ମା' ହାତୀ ସେମାନଙ୍କୁ ଜମା ଧ୍ୟାନ ଦେଲା ନାହିଁ । ସେ ସେମାନଙ୍କୁ ଦୁଧ ପିଇବାକୁ ଦେଲା ନାହିଁ । ସେମାନେ ତା' ପାଖକୁ ଆସିବା ମାତ୍ରେ ସେ ସେଠାରୁ ଦୂରେଇ ଯାଉଥିଲା । ତା'ର ଶିକୁଳି ଖୋଲି ଦିଆଯିବା ପରେ ସେ ଛୁଆ ଦୁଇଟିକୁ ଛାଡ଼ି ଦୂରେଇ ଗଲା । ଏହି ମା'ଟିର ଉଚ୍ଚତା ଥିଲା 2 ମିଟର ଓ ବୟସ ଥିଲା 25 ବର୍ଷ । ତା'ର ପାଳକଙ୍କ କହିବା ଅନୁସାରେ ଏଇଟି ଥିଲା ତା'ର ପ୍ରଥମ ଛୁଆ ପ୍ରସବ ।

ଜନ୍ମ ବେଳେ ଛୁଆ ହାତୀଟିର ଦେହରେ ଅତି ନରମ ବାଳ ଭରି ରହିଥାଏ । ସେ ନିଜ ଶୁଣ୍ଢରେ କିଛି କରିପାରୁ ନଥାଏ; ଆରମ୍ଭରୁ କିଛି ମାସ ଯାଏଁ ସେ ନିଜ ପାଟିଟିକୁ ପ୍ରଶ୍ୱାସ ନେବା କାମରେ ବି ଲଗାଇଥାଏ । ମା' ହାତୀର ଆଗ ଗୋଡ଼ର ମଝିରେ ପହ୍ଲା ରହିଥାଏ । ହାତୀ ଛୁଆଟି ଡରି ଯାଉଥିଲାବେଳେ ସେ ମା' ହାତୀର ଶୁଣ୍ଢ ପଛରେ ଲୁଚି ଯିବାକୁ ଚେଷ୍ଟା କରିଥାଏ ।

ମା' ହାତୀ ତା' ଛୁଆକୁ ଅତି କମ୍‌ରେ ଦୁଇ ବର୍ଷ ବୟସ ହେବା ଯାଏଁ ତା'ର ଦୁଧ ପିଇବାକୁ ଦେଇଥାଏ । ଆବୁଲ୍ ଫାଜଲ୍ ତ ଏହାକୁ ପାଞ୍ଚ ବର୍ଷ ଯାଏଁ ବୋଲି ଲେଖିଛନ୍ତି । କିଛି ଲୋକ ହାତୀ ଛୁଆ ଘାସ କାମୁଡ଼ିବା ଦେଖି ଭୁଲରେ ଧରିନିଅନ୍ତି ଯେ ସେ ଏଥର କଠିନ ଖାଦ୍ୟ ଖାଇବାକୁ ହୋଇଗଲାଣି । ସେମାନେ ଜାଣି ନଥାନ୍ତି ଯେ ପୁଣିଥରେ ଛୁଆ ଜନ୍ମ ନକରିବା ଯାଏଁ ମା' ହାତୀ ତାର ପୂର୍ବ ଛୁଆକୁ ଦୁଧ ପିଇବାକୁ ଦେଇଥାଏ । ଆସାମରେ ମାଈ ହାତୀଟିଏ ଗୋଟାକ ପରେ ଗୋଟିଏ କରି ତିନୋଟି ଛୁଆକୁ ଜନ୍ମ ଦେଇଥିଲା । ଏମାନଙ୍କ ମଧ୍ୟରୁ ଛୋଟ ଛୁଆଟି ତା'ର ସବୁଠୁ ବେଶି ଯତ୍ନ ପାଇଥିଲା ।

କୌଣସି ଖେଦାରେ ହାତୀ ଛୁଆଟିଏ ଯଦି ତା' ମାଆ ଠାରୁ ଅଲଗା ହୋଇ ଧରାପଡ଼ିଯାଏ, ତେବେ ଏହାର ଲାଳନପାଳନ କରିବା ଖୁବ୍ କାଠିକର ହୋଇପଡ଼ିଥାଏ । ଏହା ବହୁତ ଖର୍ଚ୍ଚ ବହୁଳ ବି ହୋଇଥାଏ । ଏହାକୁ ମୃତ୍ୟୁ ମୁଖରୁ ବଞ୍ଚାଇବା ଯଥେଷ୍ଟ ଦୁରୁହ କାମ ହୋଇଯାଇଥାଏ । ଆରପଟେ ତାକୁ ଜଙ୍ଗଲରେ ବି ଏପରି ଛାଡ଼ି ଦିଆ ଯାଇ ନପାରେ । ସେଠାରେ ବାଘ ଆଦି ପଶୁ ତାକୁ ମାରି ପକାଇବେ । ବରଂ ଏହାକୁ ନେଇ ପାଳିଲେ ଏହାର ବଞ୍ଚିବାର ସମ୍ଭାବନା ରହିଛି , କାରଣ ସେ ଧୀରେ ତାକୁ ଭଲ ପାଇ ବସନ୍ତି ।

ଥରେ ଫ୍ରାଙ୍କ୍ ନିକଲ୍ସ୍ ନାମକ ଆସାମର ଜଣେ ଚା ବଗିଚା ମାଲିକ ହାତୀ ପିଠିରେ ବସି ଜଙ୍ଗଲ ପାର ହେଉଥିଲେ । ଏହି ସମୟରେ ଜଙ୍ଗଲରୁ ବଣୁଆ ମାଈ ହାତୀଟିଏ ବାହାରି ଆସି ପୋଷା ହାତୀଟିର ମୁଣ୍ଡରେ ନିଜ ଶୁଣ୍ଢକୁ ରଖିଲା । ସେ ନା ଆର ହାତୀଟିକୁ ଡରୁଥିଲା ନା ତା'ର ମାଲିକଙ୍କୁ । ଏଥିରୁ ପରିଷ୍କାର ଜଣା ପଡୁଥିଲା ଯେ ସେ କିଛି ସାହାଯ୍ୟ ଲୋଡ଼ୁଛି । ସେ ତା' ପଛେ ପଛେ ଚାଲିଲେ । ଗୋଟିଏ ଜାଗାରେ ପହଞ୍ଚି ସେ ଗୋଟିଏ ହାତୀ ଛୁଆକୁ ତଳେ ପଡ଼ିଥିବାର ଦେଖିଲେ, ଯାହାର ଗୋଟିଏ ଗୋଡ଼ର ତଳ ଭାଗଟିକୁ ବାଘ ସାଂଘାତିକ ଭାବରେ ବିଦାରି ପକାଇଥାଏ ।

ପି.ଡି. ସ୍ଟ୍ରେସି ଥରେ ଗୋଟିଏ ଜଙ୍ଗଲରେ ଗୋଟିଏ ହାତୀ ଛୁଆକୁ ଦେଖିଲେ ଯିଏ ବୋଧହୁଏ ବାଘ ଆକ୍ରମଣରେ ତା' ମା'ଠାରୁ ଅଲଗା ହୋଇଯାଇଥିଲା । ଏହାର ପଛ ଗୋଡ଼ରେ

Digitized by srujanika@gmail.com

ସାତଟି ଜାଗାରେ କ୍ଷତ ହୋଇ ଯାଇଥିଲା । ଛୁଆଟି ଦୁର୍ବଳ ହୋଇ ଅସୁସ୍ଥ ହୋଇ ପଡ଼ିଥିଲା । ଅସୁବିଧାରେ ପଡ଼ି ସେ ରେଳ ଶ୍ରମିକଙ୍କ ବସ୍ତି ଆଡ଼କୁ ମାଡ଼ି ଆସିଥିଲା । ସେ ବୋଧେ ଆଶା ରଖିଥିଲା ଯେ ସେଠାରେ ତାକୁ ଖାଦ୍ୟ ଓ ସୁରକ୍ଷା ମିଳିଯାଇପାରେ ।

ବେଳେ ବେଳେ ବଣୁଆ ହାତୀ ଛୁଆ ପୋଷା ହାତୀଙ୍କୁ ପାଖରେ ଯିବାର ଦେଖିଲେ ନିଜ ଦଳ ଛାଡ଼ି ସେମାନଙ୍କ ପଛେ ପଛେ ମାଡ଼ିଚାଲନ୍ତି । ସେମାନେ ଏତେ ନିରୀହ ଯେ ସେମାନେ ନିଜ ପରିବାର ପଲ ଓ ଏକ ଅଜଣା ଦଳରେ ଥିବା ଫରକକୁ ବି ବାରିପାରନ୍ତି ନାହିଁ ।

1968 ମସିହା ମେ 21 ତାରିଖରେ ଆମେ ସନ୍ଧ୍ୟା 5 ଘଣ୍ଟା ସମୟରେ ଜଙ୍ଗଲରେ ବୁଲୁଥିଲୁ । ଏହି ସମୟରେ ଆମେ ପ୍ରଥମେ ଗୋଟିଏ ମାଈ ହାତୀକୁ ଦେଖିଲୁ । ତା' ସହିତ ଗୋଟିଏ ଛୁଆ ବି ଚାଲିଥାଏ, ଯାହାର ବୟସ ବରଷକରୁ ବେଶି ହେବ ନାହିଁ । ଆମେ ଧୀରେ ଧୀରେ ତା' ପାଖକୁ ଗଲୁ । ଆମ ଭିତରେ ଦୂରତା ପ୍ରାୟ 30 ମିଟରକୁ କମି ଆସିଥାଏ । ସେ ଆମକୁ ଦେଖିନେଇ ଦଉଡ଼ି ପଳାଇଲା; କିନ୍ତୁ ଛୁଆଟି ତା' ଆଡ଼କୁ ଯିବା ବଦଳରେ ଆମ ଆଡ଼କୁ ଚାଲି ଆସିଲା । ସେ ତା' ଶୁଣ୍ଢକୁ ବଢ଼ାଇଲା ଓ ଆମେ ଚଢ଼ିଥିବା ମାଈ ହାତୀଟିକୁ ସ୍ୱାଗତ କଲା । ସେ ବୋଧେ ଧରିନେଲା ଯେ ଆମ ହାତୀଟି ତା' ଦଳର । କିଛି ସମୟ ପରେ ସେ ତା' ମାଆକୁ ଖୋଜି ଫେରିଗଲା ।

ଥରେ ଷ୍ଟ୍ରେସି ଗୋଟିଏ ଖୋଲା ଶାଳ ଜଙ୍ଗଲରେ ପଲେ ହାତୀଙ୍କୁ ଚରୁଥିବାର ଦେଖିବାକୁ ପାଇଲେ । ସେମାନଙ୍କୁ ଭଲ ରୂପେ ଲକ୍ଷ୍ୟ କରିବା ପାଇଁ ସେ ଏକ ସୁବିଧାଜନକ ଜାଗାରେ ଛପି ବସିଲେ ଯେପରି ହାତୀମାନେ ତାଙ୍କୁ ଦେଖି ଚିଡ଼ି ନଯାଆନ୍ତି । କିଛି ସମୟ ପରେ ସେ ସେଠାରୁ ଫେରିଯିବାକୁ ବାହାରିଲେ । ଏହି ସମୟରେ ସେ ଗୋଟିଏ ହାତୀକୁ ଦେଖିଲେ ଯାହା ପଛରେ ଛୁଆ ହାତୀଟିଏ ଚାଲିଥିଲା । ଏହାର ଉଚ୍ଚତା ଥିଲା ପ୍ରାୟ 120 ସେ.ମି. । ଏହା ନିଜ ହାତୀ ପଲଟି ଠାରୁ ପ୍ରାୟ 100 ମିଟର ଦୂରେଇ ଯାଇଥିଲା । ବାରମ୍ବାର ସେ ତାଙ୍କ ପୋଷା ହାତୀଟି ଆଡ଼କୁ ନିଜ କୁନି ଶୁଣ୍ଢଟି ବଢ଼ାଇ ତାକୁ ଶୁଂଘୁଥାଏ । ଷ୍ଟ୍ରେସି ନିଜ ହାତୀକୁ ଅଟକାଇଲେ । ସେ ବି ଛୁଆ ହାତୀଟି ପ୍ରତି କୌଣସି ବିରକ୍ତି ପ୍ରକାଶ କରୁ ନଥାଏ । ପ୍ରକୃତରେ ସେ ବି ଛୁଆଟି ଆଡ଼କୁ ଶୁଣ୍ଢ ବଢ଼ାଇ ତାକୁ ଗେଲ କଲା । ଚାହିଁଥିଲେ, ଷ୍ଟ୍ରେସି ବିନା ଅସୁବିଧାରେ ସେହି ଛୁଆଟିକୁ ନେଇ ଯାଇପାରିଥାନ୍ତେ । କିନ୍ତୁ ସେ ଭାବିଲେ ଏହାର ଲାଳନ ପାଳନ କରିବା ଖୁବ୍ କଷ୍ଟକର କାମ । ତେଣୁ ସେ ତାକୁ ତଡ଼ିଦେଲେ ।

ସବୁଠୁ ଭଲ କାମ ହେଉଛି 120 ସେ.ମି.ରୁ କମ୍ ଉଚ୍ଚତା ହୋଇଥିବା ହାତୀ ଛୁଆଙ୍କୁ ନ ଧରିବା । ଏହାକୁ ଜଙ୍ଗଲରେ ତା' ମାଆ ପାଖରେ ବା ତା' ନିଜ ଦଳରେ ଯଦି ଛାଡ଼ି ଦିଆଯାଇପାରେ, ତେବେ ତାହା ହିଁ ହେବ ସବୁଠୁ ଭଲ କାର୍ଯ୍ୟ ।

ଗାଈ ବା ମଇଁଷିଙ୍କ ଦୁଧ ଦେଇ ହାତୀ ଛୁଆଙ୍କ ଲାଳନ ପାଳନ କଲେ ତାଙ୍କର ଖାଦ୍ୟ ହଜମ ବ୍ୟବସ୍ଥା ବାଧାପାଏ ଓ ସେମାନେ ଦୁର୍ବଳ ହୋଇପଡ଼ନ୍ତି । ଏଥିରେ ବିକାଶ ପାଇଁ ଖାଦ୍ୟରେ ଅଣ୍ଡାର ଧଳା ଭାଗ (ଆଲ୍‌ବୁମେନ୍), କ୍ୟାଲ୍‌ସିଅମ୍ ଓ ଜୀବସାର (ଭିଟାମିନ୍) ମିଶାଇବାକୁ ହୁଏ । ବିହାରରେ ପଶୁ ଡାକ୍ତରମାନେ ହାତୀ ଛୁଆଙ୍କୁ ଦୁଧ ଛଡ଼ା ପତଳା

Digitized by srujanika@gmail.com

ମିଶାମିଶି ରନ୍ଧାଖାଦ୍ୟ (Kedgeree) ଦେବାକୁ ପରାମର୍ଶ ଦେଇଥାଆନ୍ତି । ଏଥିପାଇଁ ସ୍ୱତନ୍ତ୍ର ଭାବରେ ବାଉଁଶରେ ତିଆରି ଗୋଟିଏ ନଳୀରେ ଏହି ଖାଦ୍ୟକୁ ରଖି ହାତୀ ଛୁଆର ପାଟିରେ ଦେଇ ଦିଆଯାଏ ।

ଆସାମରେ, ଏକଦା ଜୀ ଗୋଟିଏ ହାତୀ ଛୁଆକୁ ପାଳିବାକୁ ଚେଷ୍ଟା କରିଥିଲେ । ଆରମ୍ଭରେ ଏହା ୨6 ସେ.ମି. ଉଚ୍ଚ ଥିଲା । ସେ ପ୍ରାୟ 5 ମାସର ହୋଇଥିଲା । ଜୀ ତାକୁ ପ୍ରାୟ ଦେଢ଼ ମାସ ଯାଏଁ ପାଳିଥିଲେ । ସେ ତାକୁ ପ୍ରାୟ ଚାରିଭାଗରୁ ଭାଗେ ପାଣି ମିଶାଇ ଗାଈ କ୍ଷୀର ପିଆଉଥିଲେ । ତାକୁ ସେ ପ୍ରତିଦିନ ଅଳ୍ପ ପରିମାଣର ଭାତ, ଡାଲିମିଶା କେଡ୍‌ଜେରି ବି ଖୁଆଉଥିଲେ । ସେ ଧୀରେ ଧୀରେ ଶାଗୁଆ ପଶୁ ଖାଦ୍ୟକୁ କାମୁଡ଼ିବାକୁ ଆରମ୍ଭ କଲା ଓ ଜାଗେରି ଖାଇବାକୁ ଆଗ୍ରହ ଦେଖାଇଲା, ତା'ପରେ ଏହାକୁ ଲଣ୍ଡନ ପଠାଇ ଦିଆଗଲା । ଉଡ଼ାଜାହାଜରେ ତାକୁ ଟିଣ ଦୁଧ ଓ ମକାଗୁଣ୍ଡ ଖାଇବାକୁ ଦିଆ ଯାଇଥିଲା । ଲଣ୍ଡନରେ ତା' ପାଇଁ ଏପରି ଏକ ପ୍ରକାରର ଖାଦ୍ୟ ପ୍ରସ୍ତୁତ କରାଯାଉଥିଲା, ଯାହାର ଖାଦ୍ୟର ମୂଲ୍ୟ ହାତୀ ଦୁଧ ସଙ୍ଗେ ସମାନ । ପ୍ରାୟ ଛଅ ମାସ ପରେ ସେ ଅଧିକରୁ ଅଧିକ ପରିମାଣର କଠିନ ଖାଦ୍ୟ ଖାଇବାରେ ଲାଗିଲା, ଯଦିଓ ତା' ପାଇଁ ସେତେବେଳେ ତରଳ ଖାଦ୍ୟକୁ ହିଁ ଅଧିକ ଉପଯୋଗୀ ମନେ କରାଯାଉଥିଲା ।

ଛୁଆ ଜନ୍ମ ଦେବା ସମୟରେ ହାତୀକୁ କମ୍ ସମୟ ପାଇଁ ଦୁର୍ବଳ ଲାଗିଥାଏ । କିନ୍ତୁ ଛୁଆଟିକୁ ତିନି ମାସ ନ ହେବା ଯାଏଁ ମା' ହାତୀ ବାହାରକୁ ଚରିବା ପାଇଁ ଯାଇ ନଥାଏ ।

ମା' ହାତୀ ତା' ଛୁଆକୁ ଖୁବ୍ ଭଲ ପାଏ । ଦଳର ଅନ୍ୟ ହାତୀମାନେ ବି ଛୁଆଟିର ଯତ୍ନ ନିଅନ୍ତି । ସେ ଚରିବା ବା ଶୋଇବା ସମୟରେ ତା' ମାଆ ବା ଆଉ କୌଣସି ବଡ଼ ହାତୀ ତା'ର ଯତ୍ନ ନେଇଥାଏ । କିନ୍ତୁ ହାତୀଙ୍କୁ ବନ୍ଦୀ କରିଦେଲେ ସେମାନେ ନିଜ ରାଗକୁ ଛୁଆଙ୍କ ଉପରେ ସୁଝାଇ ପାରନ୍ତି । କୌଣସି ହାତୀଶାଳରେ କୌଣସି ବଡ଼ ହାତୀର ବାଟରେ ଯଦି କୌଣସି ଛୁଆ ହାତୀ ରହିଯାଇଥାଏ, ତେବେ ସେ ଅଧୈର୍ଯ୍ୟ ହୋଇ ତାକୁ ଠେଲିଦିଏ, ନାତ ମାରେ ବା ବେଳେ ବେଳେ ପ୍ରାଣରେ ମାରିଦିଏ । ନିଜର *ଉତ୍ତର ରାମଚରିତ*ରେ, ଭବାଭୂତି ଏପରି ଏକ ଘଟଣାକୁ ଉଲ୍ଲେଖ କରିଛନ୍ତି ଯେଉଁଥିରେ ଗୋଟିଏ ରାଗୀ ବଡ଼ ହାତୀ ଛୁଆକୁ ଆକ୍ରମଣ କରିଛି । ଏହି ହାତୀ ଛୁଆଟିକୁ ସୀତା ନିଜ ଛୁଆ ପରି ଭଲ ପାଇ ପାଳିଥିଲେ । ଏକଦା ଛୁଆଟି ପାଣିରେ ଖେଳୁଥିଲା । ଏହି ସମୟରେ ରାଗୀ ହାତୀଟି ତାକୁ ଆକ୍ରମଣ କଲା । ସୀତା କାନ୍ଦି କାନ୍ଦି ରାମଙ୍କୁ କହିଲେ, 'ପ୍ରଭୁ, ମୋ ଛୁଆଟିକୁ ବଞ୍ଚାନ୍ତୁ ।'

ମୁଁ ଲକ୍ଷ୍ୟ କରିଛି ଯେ କୌଣସି ଗୁରୁତର ବିପଦର ଚିନ୍ତା ଥିଲେ ମାଈ ହାତୀ ନିଜକୁ ଅଲଗା କରିନିଏ । ବିପଦଟି ସାଧାରଣ ହୋଇଥିଲେ ସେ ସେହି ବିପଦଜନକ ଜାଗାରୁ ବାହାରିବା ଯାଏଁ ଧାଇଁବା, ଠେଲିବା, ଡାଡ଼ିବା ଆଦି କାମ କରି ଚାଲିଥାଏ ।

ଦୁଧ ଦେଉଥିବା କୌଣସି ମାଈ ହାତୀକୁ କୌଣସି କଠିନ କାମରେ ଲଗାଇଲେ ବା ତାକୁ ତାଲିମ ଦିଆଗଲେ, ତା'ର ଦୁଧ ବନ୍ଦ ହୋଇଯାଏ । ଫଳରେ, ଛୁଆଟି ସହିତ ତାର ସମ୍ପର୍କ ବି ଅନେକ ପରିମାଣରେ ବାଧା ପାଇଥାଏ । ତେଣୁ ଗୋଟିଏ ହାତୀ ଛୁଆ ପଶୁ ଖାଦ୍ୟ ଓ ଦାନା ଆଦି ଖାଇବାକୁ ଆରମ୍ଭ କରିବା ପରେ ତା'ର ଦୁଧ ଖିଆ ଛଡ଼ାଇ ଦିଆଯିବା ଉଚିତ ।

Digitized by srujanika@gmail.com

ଥରେ ଢାମ୍‌ଗୁଡ଼ିର ଜଙ୍ଗଲ ବିଭାଗ ଦେବକଲୀ ଓ ପାର୍ବତୀ ନାମକ ଦୁଇଟି ହାତୀ ଛୁଆ ପାଇଲେ । ସେମାନଙ୍କ ଉଚ୍ଚତା ଥିଲା ଯଥାକ୍ରମେ 225 ସେ.ମି. ଓ 220 ସେ.ମି. । ସଂରକ୍ଷିତ ଜଙ୍ଗଲରେ ବୁଲାବୁଲି କରିବା ପାଇଁ ଦେବକଲୀକୁ ଚଢ଼ିବା କାମରେ ଲଗାଗଲା । 1945 ମସିହାରେ ଶୁଣିବାକୁ ମିଳିଲା ଯେ ସେ ହଜିଯାଇଛି । 1949ରେ ଗୋଟିଏ ହାତୀ ଦଳ ଭିତରେ ଆଉ କେତୋଟି ହାତୀ ସହ ତାକୁ ଗୋଟିଏ ଖେଦ଼ାରେ ଧରାଗଲା । ଜଙ୍ଗଲ ବିଭାଗ ତାକୁ ସେହି ହଜିଲା ହାତୀ ରୂପେ ଠାବ କରିପାରିଲେ । ତେଣୁ ତାକୁ ପୁଣି ଜଙ୍ଗଲ ବିଭାଗକୁ ହସ୍ତାନ୍ତର କରି ଦିଆଗଲା । ତାକୁ ପୁଣି ଆଗର ମାହୁନ୍ତ ଅଧୀନରେ ପୁରୁଣା କାମରେ ଲଗାଗଲା । 1950 ମସିହା ଫେବୃଆରୀ 6 ତାରିଖରେ ସେ ପାର୍ବତୀ ନାମକ ଏକ ହାତୀଛୁଆକୁ ଜନ୍ମ ଦେଲା । ଏହାର ପ୍ରାୟ 20 ମାସ ଆଗରୁ କୌଣସି ବଣୁଆ ହାତୀ ସହ ଦେବକଲୀର ମିଳନରୁ ସେ ଜନ୍ମ ନେଇଥିଲା ।

ଢୀ ପ୍ରତିବର୍ଷ ତା'ର ପାଦ ଚିହ୍ନର ଗୋଲେଇ ଓ କାନ୍ଧ ଯାଏଁ ତା'ର ଉଚ୍ଚତାକୁ ମାପି ଚାଲିଥିଲେ । ତାଙ୍କ ଅଧ୍ୟୟନରୁ ଗୋଟିଏ କଥା ପ୍ରମାଣିତ ହୋଇପାରିଲା ଯେ, ଭାରତୀୟ ହାତୀଙ୍କର ଉଚ୍ଚତା ତାଙ୍କ ପାଦ ଚିହ୍ନର ଗୋଲେଇର ପ୍ରାୟ ଦୁଇଗୁଣ ହୋଇଥାଏ ।

ଏଠାରେ ଆମେ ପାର୍ବତୀର ବିଭିନ୍ନ ବୟସରେ ଉଚ୍ଚତାକୁ ଦେଖିବା :

| | |
|---|---|
| ବୟସ ଏକ ବର୍ଷ ବେଳେ ପାର୍ବତୀର ଉଚ୍ଚତା | 124 ସେ.ମି. |
| ବୟସ ତିନି ବର୍ଷ ବେଳେ | 155 ସେ.ମି. |
| ବୟସ ସାତ ବର୍ଷ ବେଳେ | 186 ସେ.ମି. |
| ବୟସ ଏଗାର ବର୍ଷ ବେଳେ | 213 ସେ.ମି. |
| ବୟସ ତେର ବର୍ଷ ବେଳେ | 218 ସେ.ମି. |

ତେର ବର୍ଷ ବୟସର ହେଲା ବେଳକୁ ସେ ତା' ମାଆଠାରୁ ମାତ୍ର 11 ସେ.ମି. ଛୋଟ ଥିଲା । ଏଠାରେ ଆମେ ଗୋଟିଏ କଥା ମନେ ରଖିବା ଯେ ହାତୀ ଛୁଆଟି ନିଜ ଘର ଜଙ୍ଗଲରେ ପୂରା ପ୍ରାକୃତିକ ପରିବେଶରେ ହିଁ ବଢୁଥିଲା । ଏହି ଅନୁଧ୍ୟାନରୁ ଆମେ ଗୋଟିଏ ପୋଷା ବନାଯାଇଥିବା ହାତୀର ଉଚ୍ଚତାରୁ ତା'ର ବୟସ ଧାରଣା କରିପାରିବା ।

1953 ମସିହାରେ ଗୋଟିଏ ଖେଦାରେ, ଗୋଟିଏ ପରିବାରର ପାଞ୍ଚୋଟି ହାତୀଙ୍କୁ ଧରାଯାଇଥିଲା । ହଠାତ୍ ଦେଖିଲେ ସେ ସମସ୍ତେ ପ୍ରାୟ ଏକା ଦେଖା ଯାଉଥିଲେ । ତା' ପରେ ଜଣାପଡ଼ିଲା ଯେ ଏ ସମସ୍ତେ ଥିଲେ ମାଈ ହାତୀ । ଏମାନଙ୍କ ଭିତରେ ଗୋଟିଏ କିଛିଟା ବଡ଼ ଥିଲା ଓ ଅନ୍ୟମାନେ ଛୋଟ ଥିଲେ । ଅଧିକ ଅନୁଧ୍ୟାନ କଲାପରେ ଜଣାପଡ଼ିଲା ଯେ ବଡ଼ଟି ହେଉଛି ମା' ହାତୀ ଓ ଅନ୍ୟ ଚାରୋଟି ବିଭିନ୍ନ ବୟସରେ ଥିବା ତା'ର ଝିଅମାନେ । ବଡ଼ ଝିଅଟି କିଛି ପରିମାଣରେ ଅସନ୍ତୁଳିତ ଥିଲା । ସେ ପତଳା ଓ ଦୁର୍ବଳ ଥିଲା; ତା'ର ଗୋଡ଼ ଓ ଲାଞ୍ଜ ଭାଙ୍ଗି ଯାଇଥିଲା । ତା' ବୟସ 10ରୁ 15 ବର୍ଷ ମଧ୍ୟରେ ଥିଲା । ତଥାପି ସେ ବଞ୍ଚିପାରିଥିବାର ମୂଳ କାରଣ ଥିଲା ତା' ମାଆର ସୁରକ୍ଷିତ ଯତ୍ନ । ତାକୁ ବନ୍ଦୀ ଅବସ୍ଥାରୁ ମୁକ୍ତ କରି ଦିଆଯାଇଥିଲା । ତା'

[1]ସେ ଜ୍ୟାଟିଂ ଓ୍ୱାଇଲ୍ଡ୍ ବିଷ୍ଟସ୍ ଏଲାଇଭ୍ ବହିଟି 1931 ମସିହାରେ ଲେଖିଥିଲେ ।

Digitized by srujanika@gmail.com

ମାଆକୁ ବି ଛାଡ଼ି ଦିଆଯାଉଥିଲା ।

ଅନ୍ୟ ହାତୀ ତିନୋଟିଙ୍କର ଉଚ୍ଚତାକୁ ମପାଯାଇଥିଲା । ଏହା ଥିଲା 124 ସେ.ମି., 152 ସେମି. ଓ 187 ସେ.ମି. । ଏହି କ୍ଷେତ୍ରରେ ଯଦି ଆମେ ପାର୍ବତୀର ବୟସ ଓ ଉଚ୍ଚତାକୁ ତୁଳନା କରିବା, ତେବେ ଦେଖିବା ଯେ ହାତୀ ତିନୋଟିର ବୟସ ହେବ ଯଥାକ୍ରମେ ଏକ ବର୍ଷ, ତିନି ବର୍ଷ ଓ ସାତ ବର୍ଷ । ଏଥିରୁ ଜଣାପଡୁଛି ଯେ ବଣୁଆ ହାତୀମାନେ ମାତ୍ର ଦୁଇ ବର୍ଷ ବ୍ୟବଧାନରେ ଛୁଆ ଜନ୍ମ କରିପାରନ୍ତି । ମାଈ ହାତୀଟିଏ ପ୍ରାୟ 70 ବର୍ଷ ଯାଏଁ ବଞ୍ଚିଥାଏ । ଅର୍ଥାତ୍ ସେ ଜୀବନ କାଳ ମଧ୍ୟରେ ପ୍ରାୟ 20 ବା ଅଧିକ ଛୁଆକୁ ଜନ୍ମ ଦେଇପାରେ ।

ଥରେ କେତେଜଣ ଆଫ୍ରିକୀୟ ଅଧିବାସୀ ଯୋସେଫ୍ ଡାଲ୍‌ମଣ୍ଟଙ୍କୁ କହିଥିଲେ ଯେ ସେମାନେ ଗୋଟିଏ ହାତୀ ପଲରେ ଗୋଟିଏ ଶୁଣ୍ଢ ବିହୀନ ହାତୀ ଛୁଆକୁ ଦେଖିଥିଲେ । ଏହି ଛୁଆଟି କୁଆଡ଼େ ଧଳା ରଙ୍ଗର ଥିଲା । ଡାଲ୍‌ମଣ୍ଟ୍ ଏହା ଶୁଣି ଉଲ୍ଲସି ଉଠିଥିଲେ । ସେ ଚେଷ୍ଟା କରି ଏହାକୁ ଧରିବାକୁ ଅଣ୍ଟା ଭିଡ଼ିଲେ । ସାଥିରେ ଛଅ ଜଣ ଆଦିବାସୀଙ୍କୁ ନେଇ ସେ ଜଙ୍ଗଲ ଅଭିମୁଖେ ବାହାରିଲେ । ପ୍ରାୟ ଛଅ ଘଣ୍ଟା ପରେ ସେ ଗୋଟିଏ ହାତୀ ପଲକୁ ଠାବ କଲେ । ଏଥିରେ 11ଟି ହାତୀ ଥିଲେ । ସେମାନେ ବିଭିନ୍ନ ଗଛ ସବୁ ଭାଙ୍ଗିରୁଜି ସେଗୁଡ଼ିକର ଡାଳପତ୍ରକୁ ଖାଇ ଚାଲିଥିଲେ । ଜଣେ ସହକର୍ମୀ ଡାଲ୍‌ମଣ୍ଟଙ୍କୁ ସୂଚାଇଦେଲା ଯେ ଗୋଟିଏ ବିଶାଳ ହାତୀ ତା' ଗୋଡ଼ ସନ୍ଧିରେ ଗୋଟିଏ ଛୁଆକୁ ଲୁଚାଇ ଦେଇଥିଲା ।

ଏହି ଛୁଆଟି ଡାଲ୍‌ମଣ୍ଟ୍ ଆଗରୁ ଦେଖିଥିବା ସବୁ ହାତୀ ଛୁଆଙ୍କ ଠାରୁ ଅଲଗା ଥିଲା । ତା' ରଙ୍ଗଟି ଫିକା ଥିଲା । ସେ ଯେତେବେଳେ ଦର୍ଶକ ଦଳଟି ଆଡ଼କୁ ତା' ମୁହଁ ବୁଲାଇଲା ସେମାନେ ନିଶ୍ଚିତ ହୋଇଗଲେ ଯେ ତା'ର ଏପରି କିଛି ନାହିଁ ଯାହାକୁ ଶୁଣ୍ଢ ବୋଲି କୁହାଯାଇପାରିବ । ତା'ମୁଣ୍ଡର ଆକାରଟିକୁ ବି ଠିକ୍ ରୂପେ କଳି ହେଲା ନାହିଁ । ସେମାନେ ନିଜ ବାଇନୋକୁଲାର୍ ଗୁଡ଼ିକ ହାତୀ ଛୁଆଟି ଉପରେ ମୁହାଁଇ ଧରିଥାନ୍ତି । ସେମାନେ କିଛି ସମୟ ପରେ ଜାଣି ପାରିଲେ ଯେ ଏହା ହାତୀ ଛୁଆ ନଥିଲା; ସେ ଥିଲା ଏକ ଗଣ୍ଡା-ଛୁଆ !

ମା' ହାତୀଟି ତାକୁ ଯଥେଷ୍ଟ ଆଦରି ନେଇଥିଲା, ଚରିବା ସମୟରେ ସେ ତାକୁ ନିଜ ସାମନାରେ ହିଁ ରଖୁଥିଲା । ଏହି ସମୟରେ ସେ ତାକୁ ଶୁଣ୍ଢ ବଢ଼ାଇ ଆଉଁଷି ଦେଉଥିଲା । ସେ ତାକୁ ତା' ଆଖି ଆଗରୁ କୁଆଡ଼େ ଯିବାକୁ ଦେଉ ନଥିଲା । କେହି ଜାଣି ନଥିଲେ ଏହା କିପରି ସମ୍ଭବ ହୋଇପାରିଥିଲା । ଏହା ଥିଲା ପ୍ରକୃତିର ଗୋଟିଏ ରହସ୍ୟ । ହୁଏତ ଗଣ୍ଡା ଛୁଆଟି କୌଣସି କାରଣରୁ ତା' ମାଆଠାରୁ ଅଲଗା ହୋଇ ଯାଇଥିଲା ଓ କୌଣସି କାରଣରୁ ଏହି ମା' ହାତୀଟି ବି ନିଜ ଛୁଆଟିକୁ ହରାଇଥିଲା । ତେଣୁ ସେ ଏହାକୁ ତା' ଛୁଆ ବଦଳରେ ଗ୍ରହଣ କରି ନେଇଥିଲା ।

## ହାତୀଙ୍କ ଶୟନ ରୀତି

ଦିନ ବେଳା ଅତ୍ୟଧିକ ଗରମ ଲାଗୁଥିଲେ ହାତୀମାନେ ମଧ୍ୟାହ୍ନ ବେଳକୁ ଘଡ଼ିଏ ଢୁଳାଇ ପଡ଼ିଥାନ୍ତି । ରାତିରେ ବି କମ୍ ସମୟ ପାଇଁ ସେମାନେ ଶୋଇଥାନ୍ତି । ଏଥିପାଇଁ ସେମାନେ କେବେ କେବେ ତଳେ ଶୋଇଥାନ୍ତି, କିନ୍ତୁ ତା' ବି ସବୁବେଳେ ନୁହେଁ । ଏକଦା ବିଶ୍ୱାସ କରାଯାଉଥିଲା ଯେ

Digitized by srujanika@gmail.com

ହାତୀଙ୍କ ଗୋଡ଼ରେ ଗଣ୍ଠି ନାହିଁ । ତେଣୁ ସେମାନେ ଗୋଡ଼ ଭାଙ୍ଗି ତଳେ ବସି ପାରିବେ ନାହିଁ । ଏପରି ଏକ ବିଶ୍ୱାସ ଲୋକଙ୍କ ମନରେ ଚେର ଧରିବାର ମୂଳ କାରଣ ଥିଲା ହାତୀମାନେ ସାଧାରଣତଃ ତଳେ ବସି ଆଖି ପତା ବାରମ୍ବାର ମୁଦି ନଥାନ୍ତି । ଫ୍ରାନ୍ସର ଶାସକ ଷୋଡ଼ଶ ଲୁଇସ୍‌ଙ୍କର ଗୋଟିଏ ହାତୀ ତ ପାଞ୍ଚ ବର୍ଷ ଯାଏଁ କେବେ ବି ତଳେ ବସି ନଥିଲା । ସେ ଯେତେବେଳେ ଶୋଇବାକୁ ଚାହୁଁଥିଲା ସେତେବେଳେ ସେ କାନ୍ଥରେ ନିଜେ କରିଥିବା ଦୁଇଟି ଗାତ ଭିତରେ ନିଜ ଦାନ୍ତ ଦୁଇଟିକୁ ପୂରାଇ ଦେଉଥିଲା । ଏଥର ତା' ଦାନ୍ତ ଦୁଇଟା ତା' ମୁଣ୍ଡର ଓଜନକୁ ସମ୍ଭାଳି ନେଉଥିଲା ଓ ସେ କିଛି ସମୟ ପାଇଁ ଶୋଇ ଯାଉଥିଲା ।

1967 ମେ ମାସରେ ମୁଁ ହାତୀମାନଙ୍କ ଶୋଇବା ବିଧିକୁ ଅନୁଧ୍ୟାନ କରିଥିଲି । ସେ ସମୟରେ ଉତ୍ତର ପ୍ରଦେଶର ପାହାଡ଼ର ପାଦଦେଶରେ ଥିବା ଜଙ୍ଗଲଗୁଡ଼ିକରେ ବହୁତ ଗରମ ଅନୁଭୂତ ହେଉଥିଲା । ଏଠାରେ ଦିନସାରା ଗରମ ଝାଞ୍ଜି ପବନ ବୋହୁଥିଲା ଓ ପାଣିର ଉତ୍ସ ସବୁ ଶୁଖିଯାଇଥିଲା । ମୁଁ ଲକ୍ଷ୍ୟ କରିଥିବା ହାତୀ ପଲଗୁଡ଼ିକ ଦିନର ପ୍ରଥମ ଭାଗରେ ପ୍ରାୟ 10ଟା ବେଳକୁ ହିଁ – ଜଙ୍ଗଲରୁ ବାହାରିଯାଇ ଛାଇଛାଇକା ଜାଗାରେ ଆଶ୍ରୟ ନେଉଥିଲେ । ପ୍ରଥମେ ମାଈ ହାତୀଗୁଡ଼ିକ ଛୁଆଙ୍କୁ ନେଇ ଛାଇ ଆଡ଼କୁ ଚାଲିବାକୁ ଆରମ୍ଭ କରି ଦେଉଥିଲେ । 1967 ମସିହା ମେ' 23 ତାରିଖରେ ମୁଁ ମୋ ଖାତାରେ ତଳ ସୂଚିତ ଅନୁଭୂତିଗୁଡ଼ିକ ଟିପିଥିଲି :

- ଛାଇ ଜାଗାରେ ପ୍ରଥମେ ସାନ ଛୁଆଗୁଡ଼ିକ ତଳେ ବସିଯାଇଥିଲେ । ତା'ପରେ ବଡ଼ ଛୁଆଗୁଡ଼ିକ । ତା'ପରେ କେତୋଟି ବଡ଼ ହାତୀ ବି ତଳେ ବସିଯାଇଥିଲେ । କିନ୍ତୁ ବଡ଼ଙ୍କ ମଧ୍ୟରୁ ଅଧିକାଂଶ ଠିଆ ହୋଇ ହିଁ ଶୋଇଥିଲେ । ମଝିରେ ମଝିରେ ସେମାନେ ମୁହଁ ଖୋଲି ହାଇ ମାରୁଥିଲେ । ଗୋଟିଏ ବିଶାଳକାୟ ଦନ୍ତା ହାତୀ ଗୋଟିଏ କୋଣରେ ବିଶ୍ରାମ ନେଉଥିଲା । ଗୋଟିଏ କଉତୁକିଆ ହାତୀ ଛୁଆ ତା' ଗୋଡ଼ ମଝିରେ ରହିଥିଲା ।
- ଶୋଇଥିବା ସମୟରେ ସବୁ ହାତୀ ଛାଇ ଦେଉଥିବା ଗଛର ବିପରୀତ ଦିଗକୁ ମୁହଁ କରିଥିଲେ । ସେମାନଙ୍କ ପଛ ପାଖ ଗଛ ଆଡ଼କୁ ରହିଥିଲା । ଏପରି ରହିବାର ମୂଳ କାରଣ ଥିଲା ସେମାନଙ୍କ ନିଜ ଆତ୍ମରକ୍ଷା : ଏପରି ଥିଲେ ସେମାନେ ସବୁ ସମୟରେ ଯେ କୌଣସି ଶତ୍ରୁର ଆଗମନକୁ ଜାଣି ନେଇପାରିବେ । ଏହି ସମୟରେ ମାଛି ଓ ମଶାଙ୍କୁ ଦୂରେଇ ରଖିବା ପାଇଁ ସେମାନେ ଗୋଡ଼ରେ ଭୂମିକୁ ଖୋଳି ପକାଉଥିଲେ ଓ ଏହାକୁ ଶୁଣ୍ଢରେ ଉଠାଇନେଇ ନିଜ ପିଠିରେ ସିଞ୍ଚି ଦେଉଥିଲେ । କେତୋଟି ହାତୀ ଶୁଣ୍ଢରେ ଡାଳ ଧରି ମାଛିଙ୍କୁ ହଟାଇବା ପାଇଁ ଏହାକୁ ବିଞ୍ଚଣା ପରି ହଲାଉଥିଲେ । ସେମାନେ ନିଜ କାନଗୁଡ଼ିକୁ ବି ଲଗାତାର ହଲାଉଥିଲେ ।
- ବଡ଼ ଦନ୍ତାହାତୀଗୁଡ଼ିକ ଶୋଇଥିବା ସମୟରେ ନିଜ ଶୁଣ୍ଢକୁ ଅନ୍ୟ ହାତୀ ଓ ଛୁଆଙ୍କ ଉପରେ ନିଶ୍ଚଳ ଭାବରେ ପକାଇ ରଖିଥିଲେ । ଛୁଆମାନେ ଏହାର ଓଜନ ସମ୍ଭାଳି ପାରନ୍ତୁ ବା ନ ପାରନ୍ତୁ ପଛେ ସେମାନେ ତାଙ୍କୁ ଶୁଣ୍ଢରେ ଜାବୁଡ଼ି ଧରୁଥିଲେ ଓ ନିଜ ପାଖରୁ ଦୂରେଇ ଯିବାକୁ ଦେଉ ନଥିଲେ ।
- ଗରମ ବଢ଼ିଚାଲିଥିଲା । ପୂରା ଉପତ୍ୟକାଟିରେ ଏକ ନୀରବ ଶାନ୍ତି ଛାଇ ଯାଇଥିଲା ।

Digitized by srujanika@gmail.com

ଏପରିକି ପତ୍ରର ଖସ୍‌ଖସ୍ ଶବ୍ଦ ବି ଶୁଭୁ ନଥିଲା । ହାତୀଗୁଡ଼ିକର ଗୋଡ଼ ଭୂଇଁରେ ଖୁଣ୍ଟ ପରି ରହିଥାଏ ଓ ସେମାନଙ୍କ ଶୁଣ୍ଢଗୁଡ଼ିକ ସିଧା ହୋଇ ଝୁଲୁଥାଏ । ହଠାତ୍ ଦେଖିଲେ ଯେ କେହି ବି ଭାବିବ, ଗୋଟିଏ ପୁରୁଣା ମନ୍ଦିରର ପଥର ମୂର୍ତ୍ତି । ସମସ୍ତେ ଚୁପ୍‌ଚାପ୍ ହୋଇ ଯାଇଥିଲେ । ସେମାନଙ୍କ କାନଗୁଡ଼ିକ ବି ନିଶ୍ଚଳ ହୋଇ ଯାଇଥିଲା । କେତୋଟି ହାତୀ ସତରେ ଘୁଙ୍ଗୁଡ଼ି ମାରୁଥାନ୍ତି ।

- ଆମେ ଶାଳ ଗଛ ଛାଇରେ ଏକ ଉଚ୍ଚ ଜାଗାରେ ବସି ଏହାକୁ ଲକ୍ଷ୍ୟ କରୁଥାଉ । ଏଥର ଆମର କେତୋଟି ଫଟୋ ତୋଳିବାକୁ ଇଚ୍ଛା ହେଲା । ଆମେ ଉପତ୍ୟକାକୁ ଓହ୍ଲାଇ ଆସିଲୁ । ପାଦ ଚିପି ଚିପି ଆମେ ଶୋଇଲା ହାତୀ ଛୁଆଙ୍କ ପାଖରେ ପହଞ୍ଚିଲୁ । ତାଙ୍କୁ ଜଗିଥିବା ମା' ହାତୀଗୁଡ଼ିକ ବି ଶୋଇ ଯାଇଥିଲେ । ଭାଗ୍ୟବଶତଃ ଆମେ କେତେକ ଚମତ୍କାର ଫଟୋ ନେଇପାରିଲୁ ।
- ସୂର୍ଯ୍ୟ ଆହୁରି ମୁଣ୍ଡ ଉପରକୁ ଉଠି ଯାଇଥିଲା । କେତୋଟି ହାତୀ ଉପରେ ସୂର୍ଯ୍ୟକିରଣ ଏବେ ସିଧା ପଡ଼ୁଥାଏ । ସେମାନେ ସେଠାରୁ ଉଠି ଛାଇଥିବା ଜାଗାକୁ ଘୁଞ୍ଚିଗଲେ । ଆମ ଘଡ଼ିରେ ଦିନ 11ଟା ବାଜିଥିଲା, ଘଣ୍ଟାକର ବିଶ୍ରାମ ଓ ନିଦ ଜୀବଗୁଡ଼ିକୁ ସତେଜ କରି ଦେଇଥିଲା । ଜଣକ ପରେ ଜଣେ ହୋଇ ସମସ୍ତେ ଛାଇ ଜାଗାକୁ ଛାଡ଼ିଲେ ଓ ଖୋଲା ପଡ଼ିଆକୁ ଯାଇ ଚରିବାରେ ଲାଗିଲେ । କେତୋଟି ହାତୀ ପାଖ *ଶିଶୁ* ଗଛର ବକଳକୁ ଛଡ଼ାଇ ଖାଉଥାନ୍ତି ।
- ଦୁଧ ଛାଡ଼ି ନଥିବା ହାତୀ ଛୁଆଗୁଡ଼ିକ ଏ ଯାଏଁ ଶୋଇଥାନ୍ତି । ସେମାନଙ୍କ ମାଆମାନେ ତାଙ୍କୁ ଧୀରେ ଧୀରେ ହଲାଇ ଉଠାଇବାକୁ ଚେଷ୍ଟା କରୁଥାନ୍ତି । ସେମାନେ ଯଥେଷ୍ଟ ସ୍ନେହ ଓ ଯତ୍ନର ସହ ସାଉଁଳାଇ ଦେଉଥାନ୍ତି । ସେମାନେ ଉଠିବା ପରେ ସମସ୍ତେ ମିଶି ସେଠାରୁ ଚାଲିଲେ ।

## ବାସ

ଏସିଆର ହାତୀମାନେ ମୁଖ୍ୟତଃ ହିମାଳୟର ଜଙ୍ଗଲ, ଉତ୍ତର ପ୍ରଦେଶର ପଶ୍ଚିମ ଭାଗ, ଆସାମ ଓ ପଶ୍ଚିମ ବଙ୍ଗ, ମିଆଁମାର, ଥାଇଲାଣ୍ଡ, ଇଣ୍ଡୋଚାଇନା, ମାଲେସିଆ, କାଲିମାନ୍ତାନ (ଆଗର ବୋର୍ଣ୍ଣିଓ) ଓ ଇଣ୍ଡୋନେସିଆ (ଆଗର ସୁମାତ୍ରା) : ଭାରତର ନୀଳଗିରି, ପଶ୍ଚିମ ଘାଟ ପର୍ବତମାଳା, କର୍ଣ୍ଣାଟକ, କୁର୍ଗ ଓ ଟ୍ରାଭାଙ୍କୋର୍ ଏବଂ କିଛି ପରିମାଣରେ ଓଡ଼ିଶା ଓ ବିହାରରେ ଦେଖିବାକୁ ମିଳନ୍ତି ।

ସାଧାରଣତଃ ହାତୀମାନେ ସମୁଦ୍ର ପତନଠାରୁ 1,524 ମିଟରରୁ ଅଧିକ ଉଚ୍ଚରେ ଦେଖିବାକୁ ମିଳନ୍ତି ନାହିଁ । ମିଆଁମାରରେ କିନ୍ତୁ ସେମାନଙ୍କୁ 3,050 ମିଟର ବା ତା'ଠୁ ଉଚ୍ଚରେ ଥିବା ବାଉଁଶ ବଣରେ ଦେଖିବାକୁ ମିଳିଥାଏ । ସିକିମରେ 3,600 ମିଟର ଉଚ୍ଚରେ ବି ବରଫ ଉପରେ ହାତୀମାନଙ୍କର ପାଦ ଚିହ୍ନ ଦେଖିବାକୁ ମିଳିଛି । ଅରୁଣାଚଳ ପ୍ରଦେଶର ସୁବାନ୍‌ସିରି ଓ କେମିଙ୍ଗ ଜିଲ୍ଲାରେ 2,134 ମିଟର ଉଚ୍ଚତାରେ ହାତୀ ଦେଖିବାକୁ ମିଳିଥାନ୍ତି ।

Digitized by srujanika@gmail.com

## ବାହନ ହାତୀ

ଆଗ କାଳରେ ହାତୀ ଉପରେ ବସିବାକୁ ଏକ ସମ୍ମାନ ରୂପେ ବିଚାର କରାଯାଉଥିଲା । ସମସ୍ତେ ଏହି ସମ୍ମାନ ପାଇବାକୁ ଆଶା କରି ପାରୁନଥିଲେ । ଏହା କେବଳ ରାଜା ଓ ସମ୍ଭ୍ରାନ୍ତ ବଂଶୀୟ ଲୋକଙ୍କର ହିଁ ଅଧିକାର ଥିଲା । ସାଧାରଣ ଲୋକେ କେବଳ ବାହାଘର ସମୟରେ ବା କେତେକ ବିଶେଷ ଅବସରରେ ହିଁ ଏପରି ସୁଯୋଗକୁ ଉପଯୋଗ କରିପାରୁଥିଲେ । ପାତଞ୍ଜଳୀଙ୍କ ବର୍ଣ୍ଣନା ଅନୁସାରେ, ଯେଉଁ ବିଦ୍ୟାର୍ଥୀମାନେ ବ୍ୟାକରଣ ଉପରେ ପୂର୍ଣ୍ଣ ଦକ୍ଷତା ହାସଲ କରିପାରୁଥିଲେ, ତାଙ୍କୁ ହାତୀ ଉପହାର ଦିଆଯାଉଥିଲା । ମଗଧର ରାଜା ଏହିପରି ଭାବରେ ପାଣିନୀଙ୍କୁ ସମ୍ମାନିତ କରିଥିଲେ ।

ଗୋଟିଏ ହାତୀ ଉପରେ ଚଢ଼ିବା ପାଇଁ କେତେକ ଦକ୍ଷତା ଦରକାର ହୋଇଥାଏ । ମହିଳା, ବୟସ୍କ ଓ ଅସନ୍ତୁଳିତ ଲୋକମାନଙ୍କୁ ହାତୀ ପିଠିକୁ ଉଠିବା ପାଇଁ ସିଡ଼ି ଲୋଡ଼ା ହୋଇଥାଏ । କିନ୍ତୁ ଜଣେ ଟାଣୁଆ ଲୋକ ଗୋଟିଏ ବସିଥିବା ହାତୀର ଲାଞ୍ଜକୁ ଧରି ତା' ପିଠି ଉପରେ ଚଢ଼ି ଯାଇପାରିବ । ଠିଆ ହୋଇଥିବା ହାତୀଟିଏ ମାହୁନ୍ତର ଇସାରା ପାଇଲା କ୍ଷଣି ତାର ଗୋଟିଏ ଆଗ ଗୋଡ଼କୁ ବଙ୍କାଇ ଦିଏ । ଏଥର ଚଢ଼ାଳୀ ଜଣକ ତା'ର ସେହି ବଙ୍କା ଗୋଡ଼ରେ ପାଦ ରଖି ହାତୀର କାନକୁ ଧରିନିଏ ଓ ଉପରକୁ ଚଢ଼ିଯାଏ । ହାତୀର ଶୁଣ୍ଢକୁ ଧରି ଉପରକୁ ଉଠିବା ପାଇଁ ଟିକେ ଅଭ୍ୟାସ ଲୋଡ଼ା ହୋଇଥାଏ । ଚଢ଼ାଳୀ ତା'ର ଶୁଣ୍ଢ ଅଗରେ ଠିଆ ହୋଇ ଦୁଇହାତରେ ହାତୀର କାନ ମୂଳକୁ ଜାବୁଡ଼ି ଧରେ । ଏଥର ହାତୀ ତାକୁ ଶୁଣ୍ଢରେ ଧୀରେ ଉଠାଇନେଇ ନିଜ ପିଠି ଉପରେ ବସାଇଦିଏ । ଲୋକଟିକୁ ଓହ୍ଲାଇବା ପାଇଁ ବି ଏପରି କୌଶଳ ବ୍ୟବହାର କରାଯାଇଥାଏ । ହାତୀର ଲାଞ୍ଜ ବା କାନକୁ ଧରି ଏହା ଉପରୁ ତଳକୁ ଧୀରେ ଖସିଯିବାକୁ ହୁଏ । ଦାନ୍ତ ଉପରେ ପାଦ ରଖି ହାତୀ ଉପରକୁ ଉଠିବାକୁ ମୁଁ ଖୁବ୍ ଉପଭୋଗ କରିଛି । ଇସାରା ପାଇବା କ୍ଷଣି ହାତୀ ତା'ର ଦାନ୍ତକୁ ଟିକେ ତଳକୁ ଝୁକାଇଦିଏ । ତା' ଦାନ୍ତ ଦୁଇଟି ଭୂଇଁ ପାଖକୁ ଚାଲିଆସେ । ମୁଁ ଦୁଇ ଦାନ୍ତ ଉପରେ ଠିଆ ହୋଇଯାଉଥିଲି । ଏଥର ହାତୀ ତା' ଦାନ୍ତକୁ ଉପରକୁ ଉଠାଇ ନେଉଥିଲା ଓ ମୁଁ ତା' ପିଠିକୁ ଉଠିବାକୁ ବାଟ ପାଇ ଯାଉଥିଲି ।

କେତେକ ବିଶେଷ ସମୟରେ ହାତୀମାନଙ୍କୁ ସୁନ୍ଦର ଭାବରେ ସଜା ଯାଇଛି । *ରାମାୟଣ* କାଳରେ, ସହର ଭିତର ଦେଇ ଯାଉଥିବା ହାତୀଙ୍କର ଦାନ୍ତରେ ସୁନା ଛାଉଣି କରାଯାଉଥିଲା, ସେମାନଙ୍କ ବେକକୁ ଫୁଲମାଳରେ ସଜାଇ ଦିଆଯାଉଥିଲା, ସେମାନଙ୍କ କପାଳରେ ବିଭିନ୍ନ ଆକୃତିର ସୁନ୍ଦର ଚିତ୍ର ଅଙ୍କାଯାଉଥିଲା; ତାଙ୍କ ବେକରେ ଶିକୁଳି ସହିତ ବିରାଟ ଘଣ୍ଟିକୁ ବି ବନ୍ଧା ଯାଉଥିଲା, ଯେପରି ସେମାନେ ଚାଲିବା ସମୟରେ ଶବ୍ଦ ଶୁଣାଯିବ । ସେମାନଙ୍କ ପିଠିରେ ସୁନେଲି ପାଲିଙ୍କି ପଡୁଥିଲା ଓ ଉପରେ ପତାକା ଉଡୁଥିଲା ।

ଭରତ ଯେତେବେଳେ ଜଙ୍ଗଲରେ ରାମଙ୍କୁ ଭେଟିବାକୁ ଯାଇଥିଲେ, ତାଙ୍କ ସାଥିରେ ଚାଲିଥିବା ସହଯାତ୍ରୀମାନେ ଗଙ୍ଗା ନଦୀ ପାର ହେବାପାଇଁ ହାତୀମାନଙ୍କୁ ବ୍ୟବହାର କରିଥିଲେ । ଏମାନଙ୍କର ଉଭୟ ପଟେ ବିରାଟ ଆକାରର ପତାକା ସବୁ ଝୁଲୁଥିଲା । ନଦୀରେ ପହଁରି ଯାଉଥିବା ସମୟରେ ସେମାନେ ଡେଣାଥିବା ପାହାଡ଼ ପରି ମନେ ହେଉଥିଲେ । ଋଷି ବଶିଷ୍ଠଙ୍କୁ ତାଙ୍କ

Digitized by srujanika@gmail.com

କାମଧେନୁ ଗାଈ ବଦଳରେ ବିଶ୍ୱାମିତ୍ର 14,000 ହାତୀ ଦେଇଥିଲେ ଯେଉଁମାନଙ୍କ ବେକରେ ସୁନା ହାର ଓ ଫୁଲମାଳମାନ ଝୁଲୁଥିଲା ।

ରାଜାମାନଙ୍କର ପ୍ରତିପତ୍ତି ଓ ଗାରିମା ବଢ଼ାଇବା ଦିଗରେ ହାତୀମାନେ ସବୁବେଳେ ଏକ ପ୍ରମୁଖ ଭୂମିକା ନେଇଛନ୍ତି । ଆଗେ ଭାରତର ରାଜା, ମୁଖିଆ ଓ ଜମିଦାରମାନେ ଶହ ଶହ ସଂଖ୍ୟାରେ ହାତୀ ପାଳୁଥିଲେ । ଶହେ ବର୍ଷ ତଳେ ନେପାଳର ରାଜା ଓ ରାଣା ବଂଶର ପ୍ରତିଷ୍ଠାତା ମହାରାଜା ଜଙ୍ଗ୍ ବାହାଦୁର ତାଙ୍କ ହାତୀଶାଳରେ 1,000 ହାତୀ ପାଳିଥିଲେ । ନେପାଳର ପ୍ରତ୍ୟେକ ରାଜକୁମାର ନିଜ ଆଧିପତ୍ୟ ଅନୁପାତରେ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ହାତୀ ପାଳୁଥିଲେ । ମହୀଶୂର (ଏବେକାର କର୍ଣ୍ଣାଟକ ରାଜ୍ୟ)ର ମହାରାଜା 1,000ରୁ ବେଶି ହାତୀ ପୋଷିଥିଲେ । ଦଶହରା ଉତ୍ସବ ସମୟରେ ସେମାନଙ୍କୁ ଦାମୀ ଓ ସୁନ୍ଦର ଅଳଙ୍କାରରେ ସଜାଇ ପଟୁଆରରେ ନିଆଯାଉଥିଲା । ମହାରାଜା ନିଜେ ଏକ ଆକର୍ଷଣୀୟ ଅଣ୍ଡିରା ହାତୀ ଉପରେ ବସୁଥିଲେ । ସେହି ହାତୀଟିକୁ ବିଭିନ୍ନ ଦାମୀ ଅଳଙ୍କାର ଓ ବେଶ ଭୂଷାରେ ସଜ୍ଜିତ କରାଯାଉଥିଲା । ତା'ର କପାଳକୁ ପଥର ଲାଗିଥିବା ସୁନା ପାତିଆରେ ମଣ୍ଡି ଦିଆଯାଉଥିଲା । ଆଉ ଦୁଇଟି ସୁସଜ୍ଜିତ ହାତୀ ସେହି ହାତୀର ପଛେ ପଛେ ପାଦ ମିଳାଇ ଚାଲୁଥିଲେ, କିନ୍ତୁ ଏମାନଙ୍କ ପିଠିରେ ଥିବା ପାଲିଙ୍କିରେ କେହି ବସୁ ନଥିଲେ । ରାଜବଂଶର ଲୋକେ ବିଶ୍ୱାସ କରୁଥିଲେ ଯେ ଏହି ପାଲିଙ୍କି ଦୁଇଟିରେ ତାଙ୍କ ପୂର୍ବଜମାନଙ୍କ ଆତ୍ମା ସବୁ ବସିଛନ୍ତି । ମହୀଶୂର ରାଜତ୍ୱକୁ ପ୍ରତିଷ୍ଠା କରି ଏତେ ସମୃଦ୍ଧି ଆଣିଦେଇଥିବା ତାଙ୍କ ପୂର୍ବ ବଂଶଧରମାନଙ୍କୁ ସମ୍ମାନ ଦେଖାଇବାର ଏହା ଏକ କାଇଦା ଥିଲା ।

ବରୋଦା (ଏବେକାର ବଡୋଦରା)ର ରାଜା ଓ କୋହ୍ଲାପୁରର ମହାରାଜା ହାତୀ ଲଢ଼େଇ କରାଇବାକୁ ଖୁବ୍ ଭଲ ପାଉଥିଲେ । ବରୋଦାର ରାଜାଙ୍କ ହାତୀଟି ଗୋଟିଏ ପାହାଡ଼ ପରି ବିଶାଳକାୟ ଥିଲା । ତା' ବୟସ ପ୍ରାୟ ୫0 ବର୍ଷ ବୋଲି ଧରାଯାଉଥିଲା । ତା'ର ବିଶାଳ ଦାନ୍ତ ରହିଥିଲା । ତା' ପିଠିର ପାଲିଙ୍କିଟି ସୁନାରେ ତିଆରି ହୋଇଥିଲା ଓ ଏହା ଉପରେ ଝକମକ କରୁଥିବା ରେଶମୀ ବସ୍ତ୍ର ପକାଯାଇଥିଲା ।

ଆଜି ବି ଆମ ସାଧାରଣତନ୍ତ୍ର ଦିବସ ପ୍ୟାରେଡ଼ରେ ସାଂସ୍କୃତିକ କାର୍ଯ୍ୟକ୍ରମର ନେତୃତ୍ୱ ହାତୀମାନେ ନେଇଥାନ୍ତି । ପ୍ରଥମ ହାତୀଟି ସମ୍ମାନ ଦିଆଯାଉଥିବା ମଞ୍ଚଟି ପାର ହେବା ପରେ ଶୁଣ୍ଢକୁ ଉପରକୁ ଉଠାଇ ଏବଂ ହର୍ଷୋତ୍‌ଫୁଲ୍ଲ ଶବ୍ଦ କରି ରାଷ୍ଟ୍ରପତିଙ୍କୁ ସ୍ୱାଗତ କରେ । 1962 ମସିହାରେ, ଉର୍ବଶୀ ନାମକ ଏକ ଛୋଟ ହାତୀ ଛୁଆ ସାଧାରଣତନ୍ତ୍ର ଦିବସର ସାଂସ୍କୃତିକ ଉପସ୍ଥାପନାର ନେତୃତ୍ୱ ନେଇଥିଲା । ସେ ଏତେ ଗୁଲୁଗାଲିଆ ଥିଲା ଯେ ସବୁ ଖବରକାଗଜର ସାମ୍ବାଦିକଙ୍କର ସେ ଆକର୍ଷଣର କେନ୍ଦ୍ରବିନ୍ଦୁ ବନିଯାଇଥିଲା । ଉର୍ବଶୀ ଦିଲ୍ଲୀ ଚିଡ଼ିଆଖାନାରେ ଥିଲା ଓ ବଡ଼ ହେଲା ବେଳକୁ ସେ ଅନେକ କୌଶଳ ଦେଖାଇବା ଶିଖିଯାଇଥିଲା । ସେ ଏକ ମାଉଥ୍ ହାର୍‌ମୋନିକା ବଜାଇପାରୁଥିଲା ଓ ତା' ଗୋଡ଼ରେ ବନ୍ଧା ଥିବା ଘଣ୍ଟିର ତାଳ ଅନୁସାରେ ସେ ନାଚି ବି ପାରୁଥିଲା । ତା' ଛଡ଼ା ଗୋପାଳ ଓ ରାଜଲକ୍ଷ୍ମୀ ନାମକ ଆଉ ଦୁଇଟି ହାତୀ ବି ଥିଲେ । ସେମାନେ ବିଭିନ୍ନ ଖେଳ ଖେଳି ଲୋକଙ୍କୁ ଖୁସି କରାଇ ଦେଉଥିଲେ । ରାଜଲକ୍ଷ୍ମୀ ତ ଫୁଟ୍‌ବଲ୍‌କୁ ସିଧା ମାରି ନେଟ୍ ଭିତରକୁ ପଠାଇ ଦେଇପାରୁଥିଲା ।

Digitized by srujanika@gmail.com

ପାଠକମାନେ ଅବଶ୍ୟ ହାତୀମାନେ ଦେଖାଇପାରୁଥିବା ବିଭିନ୍ନ କୌଶଳ ସହିତ ଭଣା ଅଧିକେ ପରିଚିତ ଥିବେ, ଯଥା : ଗୋଟିଏ ଫୁଲମାଳକୁ ଫିଙ୍ଗି ଅତିଥିଙ୍କ ବେକରେ ଗଳାଇଦେବା, ମାହୁନ୍ତକୁ କୁନି କୁନି ପଇସା ଉଠାଇ ଦେବା, ଚାରିଟିଯାକ ଗୋଡ଼କୁ ଯୋଡ଼ି ଗୋଟିଏ ଛୋଟିଆ ଜାଗାରେ ଠିଆ ହେବା ଓ ଗୋଟିଏ ରୋଲର ବା ଗୋଟିଏ କାଠ ଗୋଲେଇ ଉପରେ ନିଜର ବିରାଟ ଦେହକୁ ସନ୍ତୁଳନ କରିବା, ଦିଲ୍ଲୀ ଚିଡ଼ିଆଖାନାର ଗୋଟିଏ ହାତୀ ତ କୂଅରୁ ପାଣି ବାହାର କରିପାରେ । ସେ ପ୍ରଥମେ ନିଜ ଶୁଣ୍ଢ ସାହାଯ୍ୟରେ ଦଉଡ଼ିଟିକୁ ଉପରକୁ ଭିଡ଼ିବ, ଏହାକୁ ନିଜ ଗୋଡ଼ତଳେ ଚାପି ଧରିବ । ଏଥର ସେ ଦଉଡ଼ିଟିକୁ ଆହୁରି ଭିଡ଼ିବ ଓ ଏହାକୁ ବି ନିଜ ପାଦ ତଳେ ଚାପି ରଖିବ । ବାଲ୍ଟିଟି ଉପରକୁ ଆସିବା ଯାଏଁ ସେ ଏପରି କରି ଚାଲିବ । ଏଥର ସେ ବାଲ୍ଟିଟିକୁ ଶୁଣ୍ଢରେ ଧରିନେଇ ଏହାକୁ ଧୀର ଭାବରେ ତଳେ ରଖିବ ।

କେତେକ ସର୍କସ୍ ଦଳ ତାଙ୍କ ହାତୀଙ୍କୁ ନିଜ ଶୁଣ୍ଢ ଓ ଆଗ ଗୋଡ଼ ଉପରେ ପୂରା ଦେହକୁ ସନ୍ତୁଳନ କରି ରଖିବା ପାଇଁ ତାଲିମ ଦେଇଥାନ୍ତି । ଏହି ପ୍ରକାରେ ହାତୀଙ୍କୁ ମୁଣ୍ଡରେ ଠିଆ କରାଇବା ଦର୍ଶକଙ୍କ ପାଇଁ ଖୁବ୍ ହାସ୍ୟୋଦ୍ଦୀପକ ହୋଇଥାଏ ।

ଦେଖାଯାଇଛି ଯେ, ପୋଷା ହାତୀଙ୍କ ଛୁଆମାନେ ବଣୁଆ ହାତୀଙ୍କ ଅପେକ୍ଷା ଏପରି ବିଭିନ୍ନ କୌଶଳ ଶୀଘ୍ର ଶିଖି ଯାଇଥାନ୍ତି ।

ଥିରୁଭନନ୍ତପୁରମ୍‌ରେ ଏପରି ଦୁଇଟି ଦୁଇବର୍ଷିଆ ହାତୀ ଛୁଆ ଥିଲେ, ଯିଏ ଅତିଥିଙ୍କ ବେକରେ ଫୁଲମାଳ ପକାଇ ପାରୁଥିଲେ ଓ ପତାକା ହଲାଇ ପାରୁଥିଲେ । ସେମାନେ ନିଖୁଣ ଭାବରେ ଗଣେଶଙ୍କ ପୂଜା କରାଯିବାକୁ ବି ନକଲ କରି ପାରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଗଣେଶ ସାଜିବ, ଆରଜଣଙ୍କ ତାଙ୍କର ଭକ୍ତ ହୋଇ ତାଙ୍କୁ ନଡ଼ିଆ, ଫୁଲ ଆଦି ଅର୍ପଣ କରିବ ଓ ଘଣ୍ଟି ବଜାଇବ । ତା'ପରେ ସେ ଆଣ୍ଠୁଭାଙ୍ଗି, ଗଣେଶଙ୍କ ପାଖରେ ମୁଣ୍ଡିଆ ମାରିବ ଓ ତାଙ୍କ କରୁଣା ଭିକ୍ଷା କରିବ । ଆରଟି ତା' ଶୁଣ୍ଢକୁ ଟେକି ତା'କୁ ଆଶୀର୍ବାଦ ଜଣାଇବ । ଏହି ଦୁଇ ହାତୀଙ୍କର ନାମ ଥିଲା ଭାସ୍କରନ୍ ଓ ରାମବର୍ଦ୍ଧନ । ସେମାନେ ଶୁଣ୍ଢରେ ଖଡ଼ି ଧରି 'ସ୍ୱାଗତମ୍' ଓ 'ଧନ୍ୟବାଦ' ଆଦି ଶବ୍ଦର ଆକୃତି ବନାଇବା ଶିଖି ଯାଇଥିଲେ । ସେମାନେ ଛୋଟ ଛୋଟ ହିସାବପତ୍ର ବି କରିପାରୁଥିଲେ । ମାଉଥ୍ ହାର୍‌ମୋନିକାରେ ଜାତୀୟ ସଙ୍ଗୀତର ଧୂନ୍ ବଜାଇବା ବି ତାଙ୍କୁ ଶିଖାଯାଉଥିଲା । ତାଲିମଦାତାଙ୍କର ବିଶ୍ୱାସ ଥିଲା ଯେ ସେମାନେ ଶୀଘ୍ର ଏହା କରିପାରିବେ । କେତେକ ସର୍କସ୍ କମ୍ପାନୀର ବାଦ୍ୟଶିଖାଳୀମାନେ କହନ୍ତି ଯେ, ହାତୀଙ୍କୁ ସଙ୍ଗୀତ ଖୁବ୍ ଭଲ ଲାଗିଥାଏ ।

Digitized by srujanika@gmail.com

3

## ହାତୀ ଓ ଯଶ

### ଇତିହାସ ଓ ଉପାଖ୍ୟାନରେ ହାତୀ

ଭାରତୀୟ କଳା ଓ ସାହିତ୍ୟରେ ହାତୀମାନଙ୍କ ସମ୍ପର୍କରେ ଉଲ୍ଲେଖନୀୟ ଉଦାହରଣ ସବୁ ରହିଛି । *ଜାତକ* କାହାଣୀ, *ପଞ୍ଚତନ୍ତ୍ର* କାହାଣୀ ଓ ଲୋକକଥାରେ ହାତୀଙ୍କୁ ନେଇ ଅନେକ କଥା ଲେଖାଯାଇଛି । *ଗଜ ଜାତକ* ଅନୁସାରେ ବୋଧିସତ୍ତ୍ୱ ଗୋଟିଏ ଅବତାରରେ ହାତୀ ଜନ୍ମ ନେଇଥିଲେ । ସେତେବେଳେ ସେ ୫,000 ହାତୀଙ୍କର ନେତା ଥିଲେ । ତାଙ୍କର ଦୁଇ ଜଣ ସ୍ତ୍ରୀ



Digitized by srujanika@gmail.com

ଥିଲେ । ଥରେ କୌଣସି କାରଣରୁ ଜଣେ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କ ଉପରେ ରାଗିଗଲେ । ସେ ତାଙ୍କୁ ଗୋଟିଏ ଶିକ୍ଷା ଦେବା ପାଇଁ ତପସ୍ୟା କରିବାକୁ ଲାଗିଲେ । କଠୋର ବ୍ରତ ଦ୍ୱାରା ସେ କାଶୀର ରାଣୀ ହେବାକୁ ଚେଷ୍ଟା କଲେ । ଏଥିରେ ସେ ସଫଳ ହେଲେ । ଏଥର ସେ ସ୍ୱାମୀଙ୍କ ଉପରେ ପ୍ରତିଶୋଧ ନେବାକୁ ଚାହିଁଲେ । ସେ ଜଣେ ଶିକାରୀକୁ ଆଦେଶ ଦେଲେ, ସେ ଯାଇ ବୋଧିସତ୍ତ୍ୱଙ୍କର ଦାନ୍ତକୁ କାଟି ତାଙ୍କୁ ଆଣିଦେବ । ଶିକାରୀ ତା'ର ସମସ୍ତ ଶକ୍ତି ଲଗାଇ ବି ତାଙ୍କ ଦାନ୍ତକୁ ଭାଙ୍ଗି ପାରିଲା ନାହିଁ । କିନ୍ତୁ ବୋଧିସତ୍ତ୍ୱ ତଥାପି ତା' ଉପରେ ରାଗିଲେ ନାହିଁ । ଶିକାରୀଟି ଉପରେ ତାଙ୍କର ଦୟା ହେଲା । ସେ ନିଜେ ନିଜ ଦାନ୍ତକୁ ଭାଙ୍ଗିଦେଲେ ଓ ତାହାକୁ ରାଣୀଙ୍କୁ ଦେବା ପାଇଁ ସେ ଶିକାରୀ ହାତରେ ଦେଇଦେଲେ । ଦାନ୍ତଗୁଡ଼ିକୁ ଦେଖି ରାଣୀଙ୍କ ମନରେ ଅନୁତାପ ଆସିଲା । ସେ ଦୁଃଖରେ ଭାଙ୍ଗି ପଡ଼ିଲେ । ଏଥର ତାଙ୍କୁ ବୁଝାଇବା ପାଇଁ ବୋଧିସତ୍ତ୍ୱ ତାଙ୍କ ପାଖକୁ ଆସିଲେ । ଅଜନ୍ତାର ଗୁମ୍ଫା ଚିତ୍ରରେ ଏହି କାହାଣୀଟିକୁ ସୁନ୍ଦର ଭାବରେ ଅଙ୍କାଯାଇଛି । ଅଜନ୍ତାରେ ସବୁ ପଶୁଙ୍କ ମଧ୍ୟରେ ହାତୀଙ୍କର ସବୁଠୁ ବେଶି ମୂର୍ତ୍ତି ଦେଖିବାକୁ ମିଳିଥାଏ ।

କୁମାରଗୁପ୍ତଙ୍କର ଗୋଟିଏ ମୋହରରେ ରାଜାଙ୍କୁ ହାତୀ ଉପରେ ବସିଥିବାର ଦେଖିବାକୁ ମିଳୁଛି । ତାକୁ ଶୀଘ୍ର ଚଲାଇବା ପାଇଁ ଗୋଟିଏ ଆଙ୍କୁଶରେ ସେ ତାକୁ କେଞ୍ଚି ଦେଉଛନ୍ତି । ପଶୁଟିର ଶୁଣ୍ଢ, ଗୋଡ଼, ଲାଞ୍ଜ ଓ ଦେହର ଭଙ୍ଗୀରୁ ଜଣାପଡୁଛି ଯେ ହାତୀଟି ତା'ର ପୂରା ବଳକୁ ଖଟାଇ ଦଉଡ଼ିବାରେ ଲାଗିଛି । ହାଇଦର୍ ଅଲ୍ଲୀଙ୍କର ତମ୍ବା ମୁଦ୍ରାରେ ହାତୀଟିଏ ଶୁଣ୍ଢକୁ ଟେକିଥିବାର ଚିତ୍ର ରହିଛି ।

ଆବୁଲ୍ ଫାଜଲ୍‌ଙ୍କ ବର୍ଣ୍ଣନା ଅନୁସାରେ, ମୋଗଲ ରାଜତ୍ୱ ସମୟରେ ଗୋଟିଏ ତାସ୍ ମୁଠାକୁ ହାତୀଙ୍କ ନାମରେ ନାମିତ କରାଯାଇଥିଲା । ଏଥିରେ ଓଡ଼ିଶାର ରାଜା ହାତୀ ଉପରେ ବସିଥିବାର ଚିତ୍ର ଥିଲା । ଆକବର ପ୍ରଚଳନ କରିଥିବା ଏକ ତାସମୁଠାରେ ବି ଜଣେ ରାଜା ହାତୀ ପିଠିରେ ବସିଥିବାର ଛବି ରହିଥିଲା ।

ଆମ ଦେଶର ଚିତ୍ରକରମାନେ ବି ହାତୀଙ୍କୁ ନେଇ ଅନେକ ଛବି ଆଙ୍କିଛନ୍ତି । ଭାରତ ଓ ଅନ୍ୟାନ୍ୟ ଦେଶର ଡାକଟିକଟରେ ବି ହାତୀଙ୍କୁ ଦେଖିବାକୁ ମିଳିଥାଏ । ଦିଲ୍ଲୀ ବିଶ୍ୱ ବିଦ୍ୟାଳୟର ମୋହରରେ ଗୋଟିଏ ହାତୀର ଚିତ୍ର ରହିଛି ।

ପ୍ରାଚୀନ ଭାରତରେ ଚାରିଟି ସେନା ବାହିନୀ ମଧ୍ୟରୁ ହାତୀଙ୍କୁ ନେଇ ଗୋଟିଏ ସେନାବାହିନୀ ରହୁଥିଲା । ଯୁଦ୍ଧ ସମୟରେ ଅସଂଖ୍ୟ ହାତୀ ଯେତେବେଳେ ସୁନେଲି ରଙ୍ଗର ଯୁଦ୍ଧ ବେଶରେ ସଜ୍ଜିତ ହୋଇ ରାଜାଙ୍କ ଧ୍ୱଜା ଉଡ଼ାଇ ଯୁଦ୍ଧରେ ଲାଗିଯାଉଥିଲେ ଏହା ଏକ ଚମତ୍କାର ଦୃଶ୍ୟ ହୋଇଯାଉଥିଲା । ମନେ ହେଉଥିଲା ଯେପରି ଆକାଶରେ କଳାହାଣ୍ଡିଆ ମେଘ ସବୁ ଭାସିବୁଲୁଛି । ଏହି ହାତୀମାନଙ୍କୁ ଯଥେଷ୍ଟ ପରିଶ୍ରମ କରି ଯୁଦ୍ଧ ତାଲିମ ଦିଆଯାଇଥିଲା । ସେମାନେ ମୁଣ୍ଡରେ ଆଘାତ କରି ବଡ଼ ବଡ଼ ଦୁର୍ଗର ବିଶାଳ ଦୁଆରକୁ ଭାଙ୍ଗି ପକାଉଥିଲେ । ତୁର୍କୀର ସୁଲତାନ୍‌ଙ୍କ ସଂଗ୍ରହାଳୟରେ ସେ କାଳରେ ହାତୀମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ବିପଦରୁ ବଞ୍ଚାଯିବା ପାଇଁ ବ୍ୟବହାର କରାଯାଉଥିବା ଢାଲ, ସାଞ୍ଜୁ ଆଦି ସାଇତି ରଖାଯାଇଛି ।

Digitized by srujanika@gmail.com

ଆଗ କାଳରେ ଯୁଦ୍ଧ ସମୟରେ ହାତୀମାନେ ଆଜିକାଲିକାର ଟ୍ୟାଙ୍କର ଭୂମିକା ତୁଲାଉଥିଲେ । ରାମ ଓ ରାବଣଙ୍କ ଯୁଦ୍ଧ ସମୟରେ ରାବଣଙ୍କ ସେନାବାହିନୀରେ ହଜାର ହଜାର ହାତୀ ରହିଥିଲେ । ମହାଭାରତ ଯୁଦ୍ଧର ହିସାବ କହେ ଯେ, ଏଥିରେ ପ୍ରାୟ 2,70,000 ହାତୀ ନିୟୋଜିତ ହୋଇଥିଲେ । ଆଉ ଏକ ହିସାବ କହେ, ଏହି ସଂଖ୍ୟାଟି 3,00,000 ଥିଲା ।

ଆଲେକ୍‌ଜାଣ୍ଡରଙ୍କ ସୈନ୍ୟମାନେ ଯେତେବେଳେ ଭାରତ ଜୟ କରିବାକୁ ପହଞ୍ଚିଲେ, ସେମାନେ ପୋରସ୍‌ଙ୍କର ବିଶାଳ ହାତୀବାହିନୀ ଦେଖି ଚମକି ପଡ଼ିଥିଲେ । ଉଭୟଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହୋଇଥିଲା । ହାତୀ ପିଠିରେ ବସି ଯୁଦ୍ଧ କରୁଥିବା ରାଜା ପୋରସ୍ ଭୀଷଣ ଭାବରେ ଆହତ ହୋଇ ହାତୀ ପିଠିରୁ ତଳକୁ ଗଳି ପଡ଼ିଲେ । ଏହି ସମୟରେ ତାଙ୍କର ମୂଲ୍ୟବାନ ରାଜକୀୟ ପୋଷାକ ଓ ଅଳଙ୍କାରକୁ ଛିଡ଼ାଇ ନେବା ପାଇଁ ମାସିଡୋନିଆର ସୈନ୍ୟମାନେ ତାଙ୍କ ଆଡ଼କୁ ଝପଟି ଆସିଲେ । ଏହାକୁ ଦେଖି ମା' ହାତୀ ଛୁଆ ହାତୀକୁ ଗୋଡ଼ ସନ୍ଧିରେ ଲୁଚାଇଲା ପରି ରାଜାଙ୍କ ହାତୀ ଆହତ ରାଜାଙ୍କୁ ନିଜଗୋଡ଼ ମଝିରେ ସୁରକ୍ଷିତ ରଖିଲା ଓ କାହାକୁ ବି ପାଖରେ ପୂରାଇ ଦେଲାନାହିଁ । ଆଲେକ୍‌ଜାଣ୍ଡରଙ୍କ ଅନେକ ସୈନ୍ୟ ଆହତ ହେଲେ । କେତେ ସୈନ୍ୟ ପ୍ରାଣ ହରାଇଲେ । ଏଥର ସେମାନେ ହାତୀଟି ଉପରକୁ ବର୍ଚ୍ଛା ଫିଙ୍ଗି ତାକୁ କ୍ଷତ ବିକ୍ଷତ କରି ପକାଇଲେ । ତଥାପି ସେ ହାରିଲା ନାହିଁ । ସେ ପୋରସ୍‌ଙ୍କୁ ଉଠାଇ ଏକ ନିରାପଦ ଜାଗାକୁ ନେଇଗଲା । କିନ୍ତୁ ଅଳ୍ପ କିଛି ସମୟ ପରେ ରାଜା ସେଠାରେ ଆଖି ମୁଦି ଦେଲେ ।

ହାନିବାଲ୍ ଯେତେବେଳେ ରୋମ୍ ବିଜୟ କରିବା ପାଇଁ ସ୍ପେନ୍ ଛାଡ଼ିଲେ, ସେ ସାଙ୍ଗରେ ଅନେକ ଆଫ୍ରିକୀୟ ହାତୀଙ୍କୁ ନେଇ ଯାଇଥିଲେ । ଏହି କାର୍ଥେଜେନିଆନ୍ ସୈନ୍ୟବାହିନୀ ସେଣ୍ଟ୍ ଗୋଥାର୍ଡ୍ ଗିରିପଥ ଦେଇ ଯେତେବେଳେ ଆଲପ୍‌ସ୍ ପର୍ବତଶ୍ରେଣୀ ଅତିକ୍ରମ କଲେ ଏହି ଦୂରୁହ କାମରେ ହାତୀମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ।

ହାତୀରେ ବସିଥିବା ଯୋଦ୍ଧାଙ୍କ ହାତରେ ଧନୁ, ତୀର, ଲମ୍ୱା ବର୍ଚ୍ଛା ଓ ଢାଲ ରହିଥିଲା । ହାତୀଙ୍କ ଦେହରେ ବି କେତେକ ଢାଲ ବନ୍ଧା ଯାଇଥିଲା । ହାତୀମାନେ ବିଭିନ୍ନ ଯୁଦ୍ଧ ସାମଗ୍ରୀ ବୋହି ଚାଲିଥିଲେ । କୋଣାର୍କ ମନ୍ଦିରର ( 1238 - 1260 ଖ୍ରୀଷ୍ଟାବ୍ଦ )ର ବିଭିନ୍ନ ପଥର ମୂର୍ତ୍ତିରେ ହାତୀମାନେ ବହୁ ସଂଖ୍ୟାରେ ଦେଖିବାକୁ ମିଳନ୍ତି ।

ଆଗ କାଳରେ ବିଭିନ୍ନ ଗୋଳା ବାରୁଦକୁ ବୋହିବା କାମରେ ହାତୀମାନଙ୍କୁ ଲଗାଯାଉଥିଲା । ଭାରତରେ ବ୍ରିଟିଶ୍ ରାଜତ୍ୱ ସମୟରେ ଗୋଳା, ବାରୁଦ ବିଭାଗ ପାଇଁ ହାତୀଙ୍କୁ ବ୍ୟବହାର କରାଯାଉଥିଲା । 1900 ମସିହା ଯାଏଁ ବଣୁଆ ହାତୀଙ୍କୁ ଧରିବା ପାଇଁ ଭାରତରେ ବ୍ରିଟିଶ୍ ସୈନ୍ୟବାହିନୀରେ ଏକ ସ୍ୱତନ୍ତ୍ର ବିଭାଗ କାମ କରୁଥିଲା । ଏହା ପ୍ରଥମେ ଢାକାରେ ଅବସ୍ଥିତ ଥିଲା । କିନ୍ତୁ ଗାରୋ ପର୍ବତଶ୍ରେଣୀରେ କ୍ରମଶଃ ଅଧିକ ସଂଖ୍ୟକ ବଣୁଆ ହାତୀ ନମିଳିବାରୁ ଏହାକୁ ମିଆଁମାର୍‌କୁ ଘୁଞ୍ଚାଇ ଦିଆଯାଇଥିଲା ।

ଐତିହାସିକମାନେ ମତ ଦିଅନ୍ତି ଯେ କେବଳ ହାତୀଙ୍କ ଯୋଗୁଁ ପୋରସ୍ ଆଲେକ୍‌ଜାଣ୍ଡଙ୍କ ଦ୍ୱାରା ପରାଜିତ ହୋଇଥିଲେ । ସେହି ସମୟରେ ଯୁଦ୍ଧ ବେଳେ ପ୍ରବଳ କୋଳାହଳ କରି ବିପକ୍ଷ ସୈନ୍ୟମାନଙ୍କୁ ହତୋତ୍ସାହ କରିବାକୁ ଚେଷ୍ଟା କରାଯାଉଥିଲା । ବିଜୟ ଉଲ୍ଲାସର କାନଫଟା ଧ୍ୱନି

Digitized by srujanika@gmail.com

ଓ ବିରାଟକାୟ ବାଜାର ପ୍ରଚଣ୍ଡ ଶବ୍ଦରେ ପୋରସ୍‌ଙ୍କ ହାତୀମାନେ ବିଚଳିତ ହୋଇପଡ଼ିଥିଲେ । ସେମାନେ ଘାବରାଇଯାଇ ଏଣେତେଣେ ପଳାଇଲେ । ସେହିପରି ପାନିପତ୍ ଯୁଦ୍ଧରେ (1526 ଖ୍ରୀଷ୍ଟାବ୍ଦ) ବି ହାତୀଙ୍କ ଯୋଗୁଁ ହିଁ ଇବ୍ରାହିମ୍ ଲୋଦୀ ପରାସ୍ତ ହୋଇଥିଲେ । ବାବର୍‌ଙ୍କ ସୈନ୍ୟବାହିନୀର ଚତୁର ଗୁଳିଚାଳନାର ନିଆଁ ଦେଖି ହାତୀମାନେ ଡରକି ଗଲେ । ସେମାନେ ପ୍ରାଣ ବିକଳରେ ଏଣେ ତେଣେ ପଳାଇଲେ । ସେମାନଙ୍କ ପାଦ ତଳେ ଇବ୍ରାହିମ୍ ଲୋଦୀଙ୍କର ଅନେକ ସୈନ୍ୟ ଦଳି ଚକଟି ହୋଇ ପ୍ରାଣ ହରାଇଲେ । ଲୋଦୀ ନିଜେ ବି ତାଙ୍କ ହାତୀ ପିଠିରୁ ଖସି ପଡ଼ିଲେ ଓ ଦଳା ଚକଟାରେ ପ୍ରାଣ ହରାଇଲେ । ଏସବୁ ସାଂଘାତିକ ଘଟଣା ପରେ ଯୁଦ୍ଧ କ୍ଷେତ୍ରରେ ହାତୀଙ୍କୁ ବ୍ୟବହାର କରିବା ଅନେକାଂଶରେ କମିଗଲା । କିନ୍ତୁ ମୋଗଲ ସମ୍ରାଟମାନେ ଯୁଦ୍ଧରେ ହାତୀଙ୍କୁ ବ୍ୟବହାର କରି ଚାଲିଥିଲେ ।

## କାବ୍ୟକବିତାରେ ହାତୀ

ଗ୍ରୀଷ୍ମ କାଳରେ କାଳିଦାସ ହାତୀଙ୍କ ସମ୍ପର୍କରେ ଏପରି ବର୍ଣ୍ଣନାମାନ କରିଛନ୍ତି :

- 'ହାତୀ, ହରିଣ ଓ ସିଂହମାନେ, ଖରାରେ ଅତିଷ୍ଠ ହୋଇ, ଶତ୍ରୁତାକୁ ଭୁଲିଯାଇ, ତୃଣଭୂମି ଓ ଜଙ୍ଗଲ ଛାଡ଼ି ବାହାରି ଆସିଛନ୍ତି ଓ ନଦୀର ବିଶାଳ ବାଲୁକା ଶଯ୍ୟାରେ ସାଙ୍ଗସାଥୀ ପରି ଏକାଠି ଶୋଇଛନ୍ତି ।'[1]
- 'ଅତିଶୟ ଖରାର ପ୍ରକୋପରେ ଅତିରିକ୍ତ ଶୋଷରେ ଆଉଟୁପାଉଟୁ ହୋଇଯାଉଥିବା ଦନ୍ତା ହାତୀ ଏପରିକି ସିଂହକୁ ବି ଭୟ କରେ ନାହିଁ ।'[2]
- 'ଖରାରେ ଅତିଷ୍ଠ ହୋଇ ପଡ଼ିଥିବା ସିଂହର ନିଜର ସବୁ ଶକ୍ତି ଓ ପରାକ୍ରମ ଶୋଷରେ ମରିଯାଇଥାଏ, ସେ ପାଟି ମେଲା କରି ଧକାଉଥାଏ ଓ ତା'ର ଅତି ପ୍ରିୟ ଖାଦ୍ୟ ହାତୀକୁ ବି ସେ ଆକ୍ରମଣ କରେ ନାହିଁ । ସେ ନିଜ ଓଠକୁ ଜିଭରେ ବାରମ୍ବାର ଚାଟି ଚାଲିଥାଏ ।'[3]

ବର୍ଷା ଆସିଯିବା ପରେ ହାତୀମାନେ ନୂଆ ଶକ୍ତି ଓ ଉତ୍ସାହ ପାଇଯାଆନ୍ତି ଓ ସେମାନଙ୍କ ମନରେ କାମନାର ବାସନା ଭରିଯାଏ । ବର୍ଷାଋତୁର ବର୍ଣ୍ଣନା କରି କାଳିଦାସ ଏ ବିଷୟରେ ଲେଖିଛନ୍ତି :

- ଦେଖ, ପ୍ରିୟେ, ପ୍ରେମବିରହୀ ପ୍ରାଣଙ୍କର ପ୍ରାଣ ବର୍ଷା ଋତୁ ରାଜକୀୟ ଗରିମାରେ ଧରାପୃଷ୍ଠକୁ ଓହ୍ଲାଇ ଆସିଛି, *ମସ୍ତ* ହାତୀଙ୍କ ପରି ଜଳଭରା ମେଘ ନେଇ, ବିଜୁଳି ଚମକ ନେଇ, ବଜ୍ରନାଦ ଶୁଣାଇ ଶୁଣାଇ ।'[4]
- 'ନଦୀ ଯେତେ ବହିଯାଏ ମେଘ ଯେ ଗରଜି ଉଠେ, *ମସ୍ତ* ହାତୀ ରଡ଼ି ଛାଡ଼େ, ବନଭୂମି ପଲ୍ଲବୀ ଉଠେ, ପ୍ରେମ ବିରହୀ ଲୁହ ଢାଳେ, ମୟୂର ପୁଚ୍ଛ ଟେକି ନାଚେ, ମାଙ୍କଡ଼ ବସାରେ ବିରାଜେ ।'[5]

---

[1] *ଋତୁ ସଂହାର* I, 26.
[2] ତତ୍ରୈବ I, 15.
[3] ତତ୍ରୈବ I, 14.
[4] ତତ୍ରୈବ, I, 1.
[5] ତତ୍ରୈବ, II, 19.

Digitized by srujanika@gmail.com

- 'ମତ୍ତ ରସରେ ଗାଲ ଯେବେ ଜୁବୁବୁ ହୋଇଯାଏ ପାରୁଡ଼ା ପୋକ ସବୁ ଯେବେ ଏହାକୁ ଘେରିଯାଆନ୍ତି, ପ୍ରଥମ ବର୍ଷାର ରିମ୍‌ଝିମ୍ ଶବ୍ଦରେ ବଣୁଆ ହାତୀ ଯେତେବେଳେ ପୁଲକି ଉଠେ, ସେ ଥରକୁ ଥର ହୃଦୟ ଖୋଲି ଗର୍ଜନ କରେ, ଠିକ୍ ଏକ ତଟକା ପଦ୍ମ କଢ଼ି ପରି ।'[6]
- 'ହାତୀମାନେ ଲଢ଼େଇ କଲେ, ହ୍ରଦ ବି ମରୁମୟ ହୋଇଯାଏ : ପଦ୍ମ ଫୁଲ ସବୁ ମୂଳପୋଛ ହୋଇଯାଏ, ମାଛ ସବୁ ଉବୁଡ଼ିଯାଆନ୍ତି ଓ ଆତଙ୍କିତ ବଗ ସବୁ ପ୍ରାଣ ଭୟେ ଉଡ଼ି ଯାଆନ୍ତି ।'[7]
- 'ଦନ୍ତା ହାତୀ ନଳଗିରି, ପାଗଳପ୍ରାୟ ହୋଇ ନିଜେ ବନ୍ଧା ଥିବା ଖୁଣ୍ଟକୁ ମୂଳରୁ ଉପୁଡ଼ାଇ ଦେଇଛି ଓ ଏବେ ହାତୀଶାଳରେ ଘୁରି ବୁଲୁଛି ।'[8]

ଶ୍ରୀକୃଷ୍ଣଙ୍କ ସୈନ୍ୟବାହିନୀରେ ଥିବା ହାତୀମାନଙ୍କ ବିଷୟରେ ବର୍ଣ୍ଣନା କରି ମାଘ ଲେଖିଛନ୍ତି :

- 'ଏକ ଭୟଙ୍କର ଦନ୍ତା ହାତୀ ହ୍ରଦ ପାଣିରେ ତା'ର ପ୍ରତିଫଳନକୁ ଦେଖି ଭାବିଲା ଆଉ ଏକ ଦନ୍ତା ହାତୀ ତାକୁ ଆକ୍ରମଣ କରିବାକୁ ବସିଛି । ସେ ରାଗରେ ସେଠାରୁ ଦଉଡ଼ି ପଳାଇଲା । ସେ ଏପରି ଧୋକା ଖାଇବା ପୂରାପୂରି ସ୍ୱାଭାବିକ ।'[9]
- 'ଏହି ବାଟ ଛାଡ଼ି ତୁମେ ଯଥାଶୀଘ୍ର ପଳାଇଯାଅ । ସେହି ବିରାଟ ଦନ୍ତାହାତୀଟି ତୁମର ଏହି ବିରାଟକାୟ ସ୍ତନ ଦୁଇଟିକୁ ଆଉ ଏକ ପ୍ରତିଦ୍ୱନ୍ଦୀ ଦନ୍ତାହାତୀର କପାଳର ଉଚ୍ଚଭାଗ ବୋଲି ଭୁଲ ବୁଝି ତୁମ ଆଡ଼କୁ କଦୁଆ ଛୁଟି ଆସୁଛି । ନଦୀକୁ ପାଣି ପାଇଁ ଯାଉଥିବା ଜଣେ କୁଆଁରୀ କନ୍ୟାକୁ ସମ୍ବୋଧନ କରି ପରିହାସ କଲେ ।'[10]
- 'ମସ୍ତରେ ଉତ୍ତେଜିତ ହୋଇ ଉଠିଥିବା ଗୋଟିଏ ହାତୀକୁ ଶାନ୍ତ କରିବା ପାଇଁ ଅନ୍ୟ ହାତୀମାନେ ଯେତେବେଳେ ତା' ମୁହଁରେ ପାଣି ଛିଞ୍ଚିଲେ ଏହା ତା'ର ଗାଲ ଉପରେ ପଡ଼ି ଗୋଟିଏ ଟଟକା କାଶ କଢ଼ି ପରି ଝଟକି ଉଠିଲା । କାନ ପାଖରେ ପହଞ୍ଚିଲା ବେଳକୁ ଏହା ଏକ ଧଳା ମୁକ୍ତା ପରି ଝକଝକ ଦିଶିଲା ।'[11]
- 'ହାତୀ ଦେହରେ ବୋଳା ଥିବା ରଙ୍ଗ ସବୁ ନଦୀ ପାଣିରେ ଗୋଳାଇ ହୋଇଗଲା ଓ ପଦ୍ମ ଫୁଲର ପରାଗରେଣୁ ଗୁଡ଼ିକ ହାତୀର ଦେହକୁ ନୂଆ ରଙ୍ଗରେ ସଜାଇ ଦେଲା, ସତେ ଯେପରି ନଦୀ ଓ ଦନ୍ତା ହାତୀର ପ୍ରେମ-ପ୍ରଣୟର ଶେଷରେ ଉଭୟେ ପରସ୍ପରର ପୋଷାକକୁ ବଦଳାଇ ନେଇଥିଲେ ।'[12]
- 'ହାତୀଙ୍କ ମୁହଁରୁ ମସ୍ତ ରସ ବହି ଚାଲିଥିଲା । ଏହି ତେଲ ପରିକା ରଙ୍ଗରେ ସେମାନେ ନଦୀକୁ ରଙ୍ଗେଇ ଚାଲିଥିଲେ । ନଦୀରେ ଝଟକୁଥିବା ଚନ୍ଦ୍ରର ପ୍ରତିବିମ୍ବ ଉପରେ ଏହି

[6] *ତତ୍ରୈବ*, II, 15.
[7] *ତତ୍ରୈବ*, I, 19.
[8] *ମେଘଦୂତ : ପୂର୍ବମେଘ*, 35.
[9] *ଶିଶୁପାଳ ବଧ*, V, 32.
[10] *ତତ୍ରୈବ*, V, 34.
[11] *ତତ୍ରୈବ*, V, 35.
[12] *ତତ୍ରୈବ*, V, 39.

Digitized by srujanika@gmail.com

ଚୋପାଗୁଡ଼ିକ ଆଖି ପରି ଶୋଭା ପାଉଥିଲା । ଉପରକୁ ଉଠି ଆସିଲା ବେଳକୁ ମନେ ହେଉଥିଲା ଯେପରି ଆକର୍ଷଣୀୟ ଫୁଲ ପାଖୁଡ଼ାରେ ସଜେଇ ହୋଇ ଜହ୍ନ ଖୁବ୍ ମନଲୋଭା ଦେଖାଯାଉଛି ।'[13]

- 'ଆଉ ଏକ ଦନ୍ତାହାତୀକୁ ଆକ୍ରମଣ କରିବାକୁ ଉଦ୍ୟତ ହେଉଥିବାର ଦେଖି ମାହୁନ୍ତ ଆଙ୍କୁଶରେ ତା' ପୋଷା ହାତୀର କାନମୂଳକୁ ଏକ ଶକ୍ତ ଆଘାତ ଦେଲା । ଏହି ପ୍ରହାରରେ ଦନ୍ତାହାତୀଟିର କାନମୂଳରୁ ରକ୍ତ ଝରିବାରେ ଲାଗିଲା । ତଥାପି ସେ ଅଟକିଲା ନାହିଁ । ଭୀମକୁ ବଳ ଦ୍ୱାରା ଅଟକା ଯାଇ ନପାରେ ।'[14]
- 'ମଣିଷଙ୍କ ପାଖରେ କେତୋଟି *ନାଗ* (ସାପ) ଥିଲେ, ଯେଉଁମାନେ ଗରମ ବିଷ ନିର୍ଗତ କରୁଥିଲେ, ସେମାନଙ୍କ ଭିତର ଜଳୁଥିଲା ଓ ଏହା ମୋତି ପରି ଝଟକୁଥିଲା । ଏମାନେ ଚନ୍ଦନ ଗଛ ଛାଡ଼ି ବାହାରିଲା ବେଳକୁ ଏକା ଗୁଣଧାରୀ ଅନ୍ୟ *ନାଗ* (ହାତୀ)ମାନେ ତାଙ୍କ ସହିତ ବନ୍ଧା ଥିଲେ ।'[15]
- 'ଜଙ୍ଗଲରେ କେତେକ ଗଛରେ ପାରୁଡ଼ା ପୋକମାନେ ଭରି ହୋଇ ରହିଥିଲେ । ଗୋଟିଏ ଦନ୍ତା ହାତୀ ଏହା ଉପରେ ଘଷି ହୋଇଗଲା । ହାତୀର ମସ୍ତ ରସ ସେଠାରେ ବୋଳି ହୋଇଗଲା । ଏଥିରେ ଜାଗାଟି ନୀଳକାନ୍ତ ମଣିର, ଏକ ହାର ପରି ଝଟକିବାରେ ଲାଗିଲା ।'[16]
- 'ଗୋଟିଏ ବିଶାଳ ଦନ୍ତା ହାତୀ ବନ୍ଧା ଥିବା ଖୁଣ୍ଟଟିକୁ ମୂଳରୁ ଓପାଡ଼ି ଦେଲା, ତା' ମୁହଁରୁ ଝରୁଥିବା ମସ୍ତ ରସରେ ତା' ଶୁଣ୍ଢଟି ଓଦା ହୋଇ ଯାଇଥିଲା । ସେ ତା' ପଛ ଗୋଡ଼ରେ ବନ୍ଧାଥିବା ଶିକୁଳିକୁ ଛିଣ୍ଡାଇ ଦେଇ ପୂରା ମୁକ୍ତ ହୋଇଗଲା ।'[17]
- 'ଦନ୍ତା ହାତୀଟିଏ ତାକୁ ଆଖିଦଣ୍ଡାଟିଏ ଯେତେଥର ଦେଲେ ବି ଛୁଇଁଲା ନାହିଁ କି ତା' ପାଖରେ ଥିବା ମାଈ ହାତୀଟିକୁ ସେତିକି ଚାହିଁଲା ନାହିଁ । ସେ ଆଖି ମୁଦି ସେ ଆଗରୁ ଜଙ୍ଗଲରେ ଥିବା ବେଳର ଆନନ୍ଦକୁ ମନେ ପକାଉଥିଲା ।'[18]
- 'ରାଜାଙ୍କ ଶିବିରରେ, ଧଳା ତମ୍ବୁଗୁଡ଼ିକ ଧଳା ଦଉଡ଼ିରେ ବନ୍ଧା ଥିଲା । ଏହାର ଚାରି ପାଖରେ ହାତୀ ସବୁ ବନ୍ଧାଥିଲେ । ଏହାକୁ ଦେଖିଲେ ମନେ ହେଉଥିଲା ସତେ ଯେପରି ଜହ୍ନଟା ଏକ କଳା ମେଘ ମଧ୍ୟକୁ ପଶିଆସିଛି ।'[19]

କାଳିଦାସଙ୍କ ପ୍ରେମ ବିରହୀ, ନିର୍ବାସିତ ଯକ୍ଷ ପ୍ରଥମ ମୌସୁମୀ ମେଘକୁ ଏକ ବିରାଟ ହାତୀ ରୂପେ ଦେଖିଛନ୍ତି । ମେଘକୁ ସମ୍ବୋଧନ କରି ସେ କହୁଛନ୍ତି :

- 'ତୁମକୁ ଏକ ମଳୟ ପବନ ଦ୍ୱାରା ସେଠାକୁ ସ୍ୱାଗତ କରାଯିବ (ଦେବଗିରି ପର୍ବତ ଶିଖରକୁ) ଯେଉଁଥିରେ ତୁମର ସୁବାସ ଦ୍ୱାରା ପୃଥିବୀର ସୁଗନ୍ଧିତ ବାୟୁ ଭରି ରହିଥିବ ।

[13] ଓଜ୍ରୈବ, V, 40.
[14] ଓଜ୍ରୈବ, V, 41.
[15] ଓଜ୍ରୈବ, V, 45.
[16] ଓଜ୍ରୈବ, V, 46.
[17] *ଶିଶୁପାଳବଧ*, V, 48.
[18] ଓଜ୍ରୈବ, V, 50.
[19] ଓଜ୍ରୈବ, V, 69.
[20] *ମେଘଦୂତ : ପୂର୍ବ-ମେଘ*, ୬4.

Digitized by srujanika@gmail.com

ଖୁସିରେ ଗର୍ଜନ କରୁଥିବା ହାତୀମାନେ ନିଜ ଶୁଣ୍ଢ ଦ୍ୱରା ଏହାକୁ ଆହରଣ କରିବେ ।'[20]

ଯକ୍ଷ ମେଘକୁ କହୁଛି ଯେ ଏହା ରେଓ୍ୱା ନଦୀକୁ ଅତିକ୍ରମ କରିବା ପରେ :

■ 'ଜଙ୍ଗଲରୁ ଉଠି ଆସୁଥିବା ଏହି ସୁବାସିତ ମହକକୁ ହାତୀମାନେ ଶୁଂଘିବା ପରେ ତୁମକୁ ତୁମର ବାଟରେ ଯିବାକୁ ସାହାଯ୍ୟ କରିବେ ।'[21]

ଅଳକାପୁରୀରେ ନିଜ ଘରର ପରିବେଶର ବର୍ଣ୍ଣନା କରି ଯକ୍ଷ କହୁଛି :

■ 'ହେ ମେଘ, ତୁମେ ଯେପରି ଅତି ଭଲ ରୂପେ ଚୂର୍ଣ୍ଣ କରାଯାଇଥିବା କଳା ରଙ୍ଗ ଧାରଣ କରିଛ, କୈଳାଶ ପର୍ବତ ସେହିପରି ଗୋଟିଏ ହାତୀର କଟା ହୋଇଥିବା ତଟକା ଦାନ୍ତ ପରି ସଫା ଧଳା ।'[22]

■ 'ତୁମେ ଦେଖିବ, ଅଳକାପୁରୀର ପାହାଡ଼ ପରିକା ହାତୀମାନେ ସେତିକି ଅନର୍ଗଳ ଭାବେ ନିଜ *ମସ୍ତ* ରସ ଢାଳି ଚାଲିବେ, ଯେପରି ତୁମେ ପାଣି ବରଷି ଚାଲିଥାଅ ।'[23]

ଶୀତ ଦିନର ଆଗମନକୁ ନେଇ ବାଲ୍ମୀକି ଲେଖିଛନ୍ତି :

■ 'ମନ୍ଦର ଗତି ହିଁ ଦନ୍ତାହାତୀ ହୋଇଛନ୍ତି, ଯେଉଁମାନଙ୍କୁ ତାଙ୍କ ସ୍ୱାମୀମାନେ ଖୁବ୍ ଭଲ ପାଉଥିଲେ, ଯିଏ ପାଣି କଇଁକୁ ଓ ଜଙ୍ଗଲକୁ ଭଲ ପାଉଥିଲେ, ଯେଉଁମାନଙ୍କୁ ଫୁଲମାନେ ଖୁସିରେ ପୁଲକିତ କରୁଥିଲେ ଓ *ମସ୍ତ* ଦ୍ୱାରା ପ୍ରଭାବିତ ହୋଇଯାଉଥିଲେ ।'[24]

■ ଉତ୍ତେଜିତ ମାଈ ହାତୀଟି କ୍ଷୀଣ ବେଗରେ ନିଜ ଛୁଆଟି ସହିତ *ମସ୍ତ* ଅଣ୍ଡିରା ହାତୀଟିର ପଛେ ପଛେ ଜଙ୍ଗଲରେ ଆଗେଇ ଚାଲିଛି ।'[25]

ମହିଳାଙ୍କ ଦ୍ୱାରା ବେଷ୍ଟିତ ରାବଣର ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି ଲେଖିଛନ୍ତି ମନେ ହେଉଛି ଯେପରି ଏକ ବଣୁଆ ଅଣ୍ଡିରା ହାତୀ ଅନେକଗୁଡ଼ିଏ ମାଈ ହାତୀଙ୍କ ମେଳରେ ରହିଛି । ରାଜା ଦଶରଥ ମରିଯିବା ପରେ ତାଙ୍କର ରାଣୀମାନେ ବିଳାପ କରି କାନ୍ଦିବାରେ ଲାଗିଲେ ଯେପରି ଗୋଟିଏ ଅଣ୍ଡିରା ହାତୀ ମରିଗଲେ ତା'ର ସାଥୀ ମାଈ ହାତୀମାନେ ବିଳାପ କରନ୍ତି । ସୀତା ଯେତେବେଳେ ଲଙ୍କାରେ ବନ୍ଦୀ ହୋଇ ରହିଥିଲେ ସେତେବେଳେ ରାବଣ ସେଠାରେ ସୀତାଙ୍କୁ ଜଗାଇଥିବା ତା'ର ରାକ୍ଷସୀମାନଙ୍କୁ ଆଦେଶ ଦେଇଥିଲା, ସେମାନେ ସେତିକି ଚଲାକର ସହ ସୀତାଙ୍କୁ ସମ୍ଭାଳିବେ, ଯେତିକି ଗୋଟିଏ ବଣୁଆ ହାତୀକୁ ପୋଷା ମନେଇବା ପାଇଁ ଚେଷ୍ଟା କରାଯାଏ । ବନ୍ଦୀ ସୀତାଙ୍କୁ ଏକ ମାଈ ହାତୀ ସହ ତୁଳନା କରାଯାଇଛି, ଯିଏ ନିଜ ହାତୀ ପଲକୁ

[21] *ତତ୍ରୈବ*, 22.

[22] *ତତ୍ରୈବ*: 63.

[23] *ମେଘଦୂତ : ଉତ୍ତର ମେଘ*, 13.

[24] *ରାମାୟଣ : କିଷ୍କିନ୍ଧ୍ୟା କାଣ୍ଡ*, XXX, 35.

[25] *ତତ୍ରୈବ*, XXX, 39.

Digitized by srujanika@gmail.com

ହରାଇବା ପରେ ଅନ୍ୟମାନଙ୍କ ହାତରେ ଧରା ପଡ଼ିଯାଇଛନ୍ତି ଓ ଗୋଟିଏ ଜାଗାରେ ବନ୍ଧା ହୋଇଛନ୍ତି । ସେଠାରେ ଦୁଃଖରେ ସେ ଦୀର୍ଘଶ୍ୱାସ ଛାଡୁଛନ୍ତି । ଅନ୍ୟ ଜାଗାରେ ମଧ, ଅଧିକାଂଶ ବିପଦଗ୍ରସ୍ତ ମହିଳାଙ୍କୁ ଦଳ ଛଡ଼ା ହୋଇଯାଇଥିବା ମାଈ ହାତୀଙ୍କ ସହ ତୁଳନା କରିଛନ୍ତି ।

ସଂସ୍କୃତ ସାହିତ୍ୟରେ ମହିଳାମାନଙ୍କର ଧୀର ଚାଲିକୁ ହାତୀର ଗତି ସହ ତୁଳନା କରାଯାଇଛି । ରାମାୟଣରେ ମହିଳାଙ୍କର ସୁଗଠିତ ଜଂଘକୁ ହାତୀର ଶୁଣ୍ଢ ସହିତ ତୁଳନା କରାଯାଇଛି ।

ରାବଣର ମହିଳାମାନେ ଯଥେଷ୍ଟ ମଦ ପିଇ ପ୍ରେମ କରି ଟଳି ପଡ଼ିଲେ । ତାଙ୍କର କାନର ଗହଣା ସବୁ ତଳେ ପଡ଼ିଗଲା । ତାଙ୍କ ଫୁଲମାଳ ସବୁ ଛିଣ୍ଡି ଏଣେ ତେଣେ ପଡ଼ିଲା । ମନେ ହେଲା ଯେପରି ଗୋଟିଏ ବଣୁଆ ହାତୀ ଏକ ଅଙ୍ଗୁର ବଗିଚାକୁ ଦଳି ଚକଟି ନଷ୍ଟ କରି ଦେଇଛି ।

Digitized by srujanika@gmail.com

# 4

# ଶିକାରର ବିପତ୍ତି

**ମସ୍ତ ଅବସ୍ଥା**

କେବେ କେବେ ଯୁବ ହାତୀଟିଏ ଉତ୍ତେଜିତ ହୋଇଯାଇଥାଏ । କେତେଜଣ ବିଶେଷଜ୍ଞ କହନ୍ତି ଯେ ଅନ୍ୟ ସମୟ ଅପେକ୍ଷା ଶୀତ ଋତୁରେ ହାତୀମାନେ ଅଧିକ ଉତ୍ତେଜିତ ହୋଇଥାନ୍ତି । ଉତ୍ତର ପ୍ରଦେଶର *ତେରାଇ* ଜଙ୍ଗଲରେ ମୁଁ ହାତୀମାନଙ୍କୁ ମେ' ମାସରେ *ମସ୍ତ* ଅବସ୍ଥାରେ ଦେଖିଛି ।

ହାତୀଟିଏ *ମସ୍ତ* ଅବସ୍ଥାରେ ଥିଲାବେଳେ ହାତୀର ଗାଲରେ ଥିବା ଦୁଇଟି ଛୋଟ କଣାରୁ ଏକ ପ୍ରକାରର ରସ ଝରିଆସେ । ଏହାକୁ *ମଦ* ବା *ମସ୍ତ* ରସ ବୋଲି କୁହାଯାଇଥାଏ । ପ୍ରାୟ ଏକ ସେ.ମି. ଚଉଡ଼ା ଏହି ତେର୍‌ଛା କଣା ଦୁଇଟି ସାଧାରଣତଃ ବନ୍ଦ ରହିଥାଏ ଓ ଏଗୁଡ଼ିକୁ ସାଧାରଣତଃ ଦେଖି ହୁଏ ନାହିଁ । *ମସ୍ତ* ଅବସ୍ଥାରେ ହାତୀର ଗାଲ ଅଂଶଟି ଫୁଲିଉଠେ ଓ ଏହି ଗାତଗୁଡ଼ିକ ପରିଷ୍କାର ଜଣାପଡ଼େ । ଏଥିରୁ *ମସ୍ତ* ରସ ଝରିଚାଲେ ।



Digitized by srujanika@gmail.com



ପର୍ବ ପର୍ବାଣୀ ଅବସରରେ ସୁସଜ୍ଜିତ ହାତୀଙ୍କ ପଟୁଆର ।

Digitized by srujanika@gmail.com



ହାତୀଙ୍କ ପାଇଁ ଅଳଙ୍କାର । ତ୍ରିଚୁର (କେରଳ)ରେ ଅଳଙ୍କାରରେ ମଣ୍ଡିତ କରି ପଟୁଆରରେ ନିଆଯାଏ ।



ପଙ୍ଗଳଦନ୍ତା, ଭୂମି ଆଡ଼କୁ ମୁହାଁଇ ରହିଥିବା ତା'ର ଦାନ୍ତ ।

Digitized by srujanika@gmail.com



ଛୁଆଟି ମା'ଠାରୁ ଦୁଧ ପିଉଛି, ହାତୀର ଆଗଗୋଡ଼ ସନ୍ଧିରେ ତା'ର ପହ୍ନା ରହିଥାଏ ।

Digitized by srujanika@gmail.com



ଶିଳାଖଣ୍ଡ ଉପରେ ହାତୀ ଛୁଆଙ୍କର ସନ୍ତର୍ପଣ ଗତି ।



ମା' ସବୁବେଳେ ଛୁଆର ପାଖେ ପାଖେ ରହିଥାଏ ।

Digitized by srujanika@gmail.com



ମା'ର ସୁରକ୍ଷିତ କୋଳରେ ହାତୀ ଛୁଆ ।

Digitized by srujanika@gmail.com



ମା', ମାଉସୀଙ୍କ ସୁରକ୍ଷିତ ଶୁଣ୍ଢ ମଝିରେ ଗେହ୍ଲା ହାତୀ ଛୁଆ ।



ଆଈ ହାତୀ ଛୁଆ ହାତୀଙ୍କ ଉପରେ ଆଖି ରଖିଥାଏ ।

Digitized by srujanika@gmail.com



ସୂର୍ଯ୍ୟାସ୍ତ ସମୟରେ ଦନ୍ତା ହାତୀଟିଏ ।



ପେରିୟାରରେ ଏକ ହାତୀପଲ ।

Digitized by srujanika@gmail.com



ମୁଦୁମଲାଇଠାରେ ଶିକାରୀଙ୍କ ଗୁଳିରେ ଆହତ ହାତୀ ।

Digitized by srujanika@gmail.com



ଗୋଟିଏ ମଲା ହାତୀ ଦେହରୁ ତା'ର ଦାନ୍ତଟି ବାହାର କରାଯାଉଛି ।

Digitized by srujanika@gmail.com



ହାତୀ ଦାନ୍ତରେ ତିଆରି ଏକ ଅମୂଲ୍ୟ କଳାକୃତୀ ।

Digitized by srujanika@gmail.com



ଗୋଟିଏ ହାତୀ ଛୁଆକୁ ତା ପଛ ଗୋଡ଼ରେ ଠିଆ ହେବା ଶିଖାଯାଉଛି ।



ଦାନ୍ତ ଓ ଶୁଣ୍ଢ ମଝିରେ ହାତୀ ବୋହି ନେଉଥିବା ଏକ ବିଶାଳ କାଠଗଣ୍ଡି ।

Digitized by srujanika@gmail.com



ମା'ଠାରୁ ଦୁଧ ପିଉଥିବା ଯାଆଁଳା ହାତୀ ଛୁଆ ।



କର୍‌ବେଟ୍ ଜାତୀୟ ପାର୍କରେ ଚରୁଥିବା ହାତୀ ପଲ ।

Digitized by srujanika@gmail.com

ଉଭୟ ଅଣ୍ଡିରା ଓ ମାଈ ହାତୀଙ୍କର ଗାଲରେ ଏହି ଗାତମାନ ରହିଥାଏ । କିନ୍ତୁ *ମସ୍ତ* ରସ କେବଳ ଅଣ୍ଡିରା ହାତୀଙ୍କର ଏହି କଣାଗୁଡ଼ିକରୁ ଝରିଥାଏ । କେତେକ ପୁରୁଣା ଲେଖାରେ ଦେଖିବାକୁ ମିଳେ ଯେ, ସଦ୍ୟ ଧରାଯାଇଥିବା ମାଈ ହାତୀଙ୍କର ଏହି କଣାରୁ ବି *ମସ୍ତ* ରସ ଝରିଥାଏ । କିନ୍ତୁ ପୋଷା ମାଈ ହାତୀଙ୍କ ଠାରେ କେବେ ଏପରି ଦେଖିବାକୁ ମିଳିନାହିଁ । କିଛି ପୁରୁଖା ହାତୀ ପୋଷାଳୀ ଏହାକୁ ମଦ ବଦଳରେ ପରିତ୍ୟାଗ ଧାରା (ଦେହର ମଇଳା) ବୋଲି କହିଥାନ୍ତି । ଏହି ଦେହର ମଇଳାର ଗନ୍ଧ ବିଶେଷ ଭଲ ଲାଗି ନଥାଏ, କିନ୍ତୁ ମସ୍ତ ରସର ଗନ୍ଧ ବେଶ୍ ମଧୁର ଲାଗିଥାଏ । ମାଈ ହାତୀମାନେ ଉତ୍ତେଜିତ ଥିବା ଅବସ୍ଥାରେ କୌଣସି ଅସଂଯତ ଆଚରଣ ଦେଖାଇ ଥିବାର ଜଣା ନାହିଁ । କିନ୍ତୁ ଅଣ୍ଡିରା ହାତୀ ଉତ୍ତେଜନା ସମୟରେ ବେଶ୍ ଅସନ୍ତୁଳିତ ଓ ସମୟ ସମୟରେ ବିପଦଜନକ ଆଚରଣ ଦେଖାଇଥାନ୍ତି । ଏହି ବିପଦକୁ ଏଡ଼ିବା ପାଇଁ ଚିଡ଼ିଆଖାନା ଓ ସର୍କସ୍‌ରେ ଅଣ୍ଡିରା ହାତୀଙ୍କ ପାଖରେ ମାଈ ହାତୀଙ୍କୁ ବି ରଖାଯାଇଥାଏ ।

*ମସ୍ତ* ରସ ଗାଢ଼ ମାଟିଆ ରଙ୍ଗର ଏକ ବହଳିଆ ଓ ତେଲିଆ ଜିନିଷ ହୋଇଥାଏ । ଏହାର ଗନ୍ଧ ବି ବେଶ୍ କଡ଼ା । ମଧ୍ୟ ବୟସ ଓ ବାର୍ଦ୍ଧକ୍ୟ ବେଳକୁ ଏହି ରଙ୍ଗ ପ୍ରାୟ କଳା ଦେଖାଯାଏ । କିନ୍ତୁ ଯୁବ ହାତୀଙ୍କ କ୍ଷେତ୍ରରେ ଏହା ମାଟିଆ ରଙ୍ଗର ହୋଇଥାଏ । ହାତୀର ବୟସ ଓ ସ୍ୱାସ୍ଥ୍ୟ ଅନୁସାରେ ଏହି କ୍ଷରଣ କମ୍ ବା ବେଶି ହୋଇଥାଏ ।

ଅଣ୍ଡିରା ହାତୀଙ୍କୁ 15 ବର୍ଷ ବୟସ ହେଲାବେଳକୁ ସେମାନଙ୍କର ଏହି *ମସ୍ତ* ରସ ଝରିବାକୁ ଆରମ୍ଭ କରେ । କିନ୍ତୁ ଏହା ଏତେ କମ୍ ପରିମାଣରେ ଝରିଥାଏ ଯେ ଏହା ପ୍ରାୟ 25 ସେ.ମି.ରୁ ବେଶି ଦୂର ଯାଏଁ ବହି ପାରି ନଥାଏ । 35 ବର୍ଷ ବୟସ ଯାଏଁ ଏହା ବେଶି ପରିମାଣରେ ବହି ନଥାଏ । ହାତୀଙ୍କର ଆଚରଣ ବି ଏହାଦ୍ୱାରା ବିଶେଷ ପ୍ରଭାବିତ ହୋଇ ନଥାଏ । କିନ୍ତୁ 35ରୁ 45 ବର୍ଷ ବୟସ ସମୟରେ ଏହାର ପରିମାଣ ଏତେ ବଢ଼ିଥାଏ ଯେ ଏହା ହାତୀର ମୁହଁ ଉଭୟପଟେ ଓଦା ହୋଇଯାଇଥାଏ । ବେଳେ ବେଳେ ଏହା ଶୁଣ୍ଢ ଦେଇ ତଳ ଯାଏଁ ବହି ଯାଇଥାଏ । *ମସ୍ତ* ଅବସ୍ଥାରେ ପୂର୍ଣ୍ଣତଃ ପହଞ୍ଚି ଯାଇଥିବା ସମୟରେ ଏହିପରି ହୋଇଥାଏ । ହାତୀଟି ଜୋର୍‌ରେ ରାଗିଯାଇଥିଲେ ତା'ର ଏହି କ୍ଷରଣ ଆହୁରି ବଢ଼ିଯାଏ । ଉନ୍ନତ ମାନର ହାତୀଙ୍କ ସମ୍ପର୍କରେ ବର୍ଣ୍ଣନା କରି ବାଲ୍ମୀକି କହିଛନ୍ତି ଏମାନେ ପାହାଡ଼ ପରି ବିଶାଳ, *ମସ୍ତ* ହୋଇ ପ୍ରମତ୍ତ ହୋଇଯାନ୍ତି ଓ ଶକ୍ତ; ଏମାନଙ୍କ ମୁହଁରୁ ଲଗାତାର *ମସ୍ତ* ରସ ବହି ଚାଲିଥାଏ । *ମସ୍ତ* ରସ ବହୁ ନଥିବା ହାତୀଙ୍କୁ ଦେଖିବା ଅଶୁଭ ବୋଲି ବିଶ୍ୱାସ କରାଯାଉଥିଲା ।

ଏହି ରସର ଗନ୍ଧ ବେଶ୍ କଡ଼ା ଓ ତୀବ୍ର । ଏହି ଗନ୍ଧ ସହିତ ଅଭ୍ୟସ୍ତ ଲୋକମାନେ ଏହି ଗନ୍ଧରୁ କହି ଦେଇପାରିବେ ଯେ ସେହି ଅଞ୍ଚଳରେ *ମସ୍ତ* ହାତୀ ଅଛନ୍ତି । କିଛି ହାତୀ ପାଳକ ଏହି ଗନ୍ଧକୁ ସହି ପାରନ୍ତି ନାହିଁ । ସଂସ୍କୃତ ଗ୍ରନ୍ଥରେ କିନ୍ତୁ ଏହି ଗନ୍ଧକୁ ଅସହ୍ୟ ବୋଲି ବିଚାର କରାଯାଇନାହିଁ । *କିରାତାର୍ଜ୍ଜୁନୀୟ* ଗ୍ରନ୍ଥରେ ଏହି ଗନ୍ଧକୁ *ସପ୍ତପର୍ଣ୍ଣୀ (ଆଲ୍‌ଷ୍ଟୋନିଆ ସ୍କଲାରିସ୍)*ର ଗନ୍ଧ ବା ଅଲେଇଚ ଫୁଲ ଗନ୍ଧ ସହ ତୁଳନା କରାଯାଇଛି ।

ଜୀବ ବିଜ୍ଞାନୀମାନଙ୍କ ମତରେ ହାତୀଙ୍କର ଗାଲ ନିକଟରେ ଥିବା କେତେକ ଗ୍ରନ୍ଥିରୁ ଏହି ରସ ଝରିଥାଏ । ହାତୀଟିଏ *ମସ୍ତ* ଅବସ୍ଥାରେ ଥିଲାବେଳେ ଏହି ଗ୍ରନ୍ଥିଗୁଡ଼ିକ ଫୁଲିଉଠେ ।

Digitized by srujanika@gmail.com

ଏଥିଯୋଗୁଁ ହାତୀର ଗାଲ ବି କିଛିଟା ଫୁଲିଯାଏ ।

ଏହି କ୍ଷରଣ ପ୍ରାୟ 40 ଦିନ ଧରି ଲାଗିରହେ । ପ୍ରଥମ କେତେ ଦିନରେ ଏହା କମ୍ ପରିମାଣରେ ଝରିଥାଏ । କ୍ରମଶଃ ଏହି ପରିମାଣ ବଢ଼ିବାରେ ଲାଗେ ଓ ଏହି ସମୟ ସୀମାର ମଝିଆଡ଼କୁ ସବୁଠୁ ବେଶି ଝରେ; ତା'ପରେ ଏହାର ପରିମାଣ କ୍ରମଶଃ କମିବାରେ ଲାଗେ ଓ ଶେଷ ଆଡ଼କୁ ପୂରା ବନ୍ଦ ହୋଇଯାଏ । ଏହି ସମୟରେ ହାତୀ ବାରମ୍ବାର ପରିସ୍ରା କରେ । ମନେହୁଏ ଯେପରି ହାତୀଟି ସବୁବେଳେ ମୁତୁଛି । ଏହି ସମୟରେ ଏହି ପରିସ୍ରାର ରଙ୍ଗ ଗାଢ଼ ହଳଦିଆ ଦେଖାଯାଇଥାଏ ଓ ଏହାର ଗନ୍ଧ ବେଶ୍ ଉତ୍କଟ ହୋଇଥାଏ : କିନ୍ତୁ ମସ୍ତ ରସ ପରି ହୋଇ ନଥାଏ ।

ଏହି ଶାରୀରିକ ପରିବର୍ତ୍ତନ ସହିତ ହାତୀଟିର ପ୍ରବୃତ୍ତି ଓ ଆଚରଣରେ ବି ବଦଳ ଆସେ । ଏହି ସମୟରେ ବି ଏହାର ଫଳାଫଳ ବେଶ୍ ଗମ୍ଭୀରଜନକ ହୋଇପାରେ । *ମସ୍ତ* ଅବସ୍ଥା ଆରମ୍ଭ ହେବାର 40 ଦିନ ଆଗରୁ ହାତୀର ଆଚରଣ ବଦଳିବାକୁ ଆରମ୍ଭ କରିଥାଏ ଓ *ମସ୍ତ* ଅବସ୍ଥାର 40 ଦିନ ପର ଯାଏଁ ଏହି ଆଚରଣ ଜାରି ରହିଥାଏ । ତେଣୁ ମୋଟରେ କୁହାଯାଇପାରେ ଯେ ହାତୀଙ୍କର *ମସ୍ତ* ଅବସ୍ଥା 120 ଦିନ ଯାଏଁ ଜାରି ରହିଥାଏ । କେତେଜଣ ବିଶେଷଜ୍ଞ କହିଥାନ୍ତି ଯେ ହାତୀର ବୟସ ଓ ସ୍ୱାସ୍ଥ୍ୟ ଅନୁସାରେ ଏହି ସମୟ ସୀମା ବଦଳିଥାଏ । ଏହା ଅଳ୍ପ କିଛିଦିନ ବା ସପ୍ତାହରୁ ପାଞ୍ଚମାସ ଧରି ବି ଚାଲିପାରେ ।

*ମସ୍ତ* ରସ ବହିବାର ପୂର୍ବ ସମୟକୁ କାଳିଦାସ *ଅନ୍ତର୍ମାଦାବସ୍ଥା* ବୋଲି କହିଛନ୍ତି । ରାଜା ଦିଲୀପଙ୍କ ବିଷୟରେ ସେ ଲେଖିଛନ୍ତି, 'ଯଦିଓ ସେ ନିଜର ସବୁ ରାଜକୀୟ ଆଦବକାଇଦା ଛାଡ଼ି ଦେଇଥିଲେ, ତାଙ୍କର ସୁଗଠିତ ଦେହ ଓ ତାଙ୍କର ମୁହଁ ତାଙ୍କ ରାଜକୀୟ ମହିମାକୁ ସୂଚାଇ ଦେଉଥିଲା, ଠିକ୍ ଯେପରି ହାତୀଟିର *ମସ୍ତ* ରସ ବହୁ ନଥିଲେ ମଧ ତା'ର ଅନ୍ତର୍ନିହିତ *ମସ୍ତ* ପ୍ରକାଶ ପାଇ ଯାଉଥାଏ ।'

ଅଭିଜ୍ଞ ହାତୀ ପାଳକମାନେ ହାତୀଙ୍କର *ମସ୍ତ* ରସ ଝରିବାର ଯଥେଷ୍ଟ ଆଗରୁ ଏହି ଅବସ୍ଥା ଆସିବା ବିଷୟରେ ଆଗୁଆ ସୂଚନା ଦେଇପାରିଥାନ୍ତି । ଏ ସମୟ ପୂର୍ବରୁ ହାତୀଙ୍କର ଆଖିର ରୂପ ବଦଳିଯାଏ । ତାଙ୍କ ଚାହାଣୀରେ ଉଦ୍ଧତତା ପ୍ରକାଶ ପାଏ । ତାଙ୍କ ବ୍ୟବହାର ଖାପଛଡ଼ା ଲାଗେ । ଶାନ୍ତ ଥିବା ସମୟ ଅପେକ୍ଷା ଏବେ ସେମାନଙ୍କ ପ୍ରତିକ୍ରିୟା ଓ ଆଚରଣ ବେଶ୍ ଅଲଗା ଲାଗେ ।

ଏହି ଅବସ୍ଥାରେ ଥିବା ହାତୀଟିଏ ଅନିଚ୍ଛାର ସହ ଆଦେଶ ପାଳନ କରିପାରେ । କେତେକ ସମୟରେ କରି ନପାରେ ମଧ । ସେ ନିଜ ଇଚ୍ଛା ଅନୁସାରେ କାମ କରେ । ଏପରିକି ସବୁଠୁ ଶାନ୍ତଶିଷ୍ଟ ହାତୀ ବି ମାହୁନ୍ତକୁ ଅବଜ୍ଞା କରିଥିବାର ପ୍ରମାଣ ରହିଛି । *ମସ୍ତ* ହାତୀଗୁଡ଼ିକ ସବୁ କ୍ଷେତ୍ରରେ ହିଂସ୍ର ଓ ବିପଦଜନକ ହୋଇ ନଥାନ୍ତି, କିନ୍ତୁ ତାଙ୍କୁ ଚିଡ଼ାଇଦେଲେ ସେମାନେ ସେପରି ହୋଇଯାଇପାରନ୍ତି ।

*ମସ୍ତ* ହାତୀଟିଏ ନିୟନ୍ତ୍ରଣ ବାହାରକୁ ଯାଇ ପାଗଳ ପ୍ରାୟ ହୋଇଗଲେ ସେ ଧନ ଓ ଜୀବନ ପ୍ରତି ବିପଦଜନକ ହୋଇପାରେ । ସେ ସମୟରେ ତାକୁ ଗୁଳି କରିଦେବାକୁ ପଡ଼େ ।

Digitized by srujanika@gmail.com

ସାଧାରଣତଃ ଲୋକମାନେ ସବୁ ଉନ୍ମତ୍ତ ହାତୀକୁ ପାଗଳ ବୋଲି ଧରିନିଅନ୍ତି । କିନ୍ତୁ ଏହା ଏକ ଭୁଲ ବିଶ୍ୱାସ । ହାତୀଙ୍କର ପାଗଳାମୀ ଏକ ପୂରାପୂରି ଅଲଗା ଅବସ୍ଥା ହୋଇଥାଏ । ଉତ୍ତେଜନା ପୋଷା ହାତୀଙ୍କର ପାଗଳାମୀର ଏକ କାରଣ ହୋଇପାରେ । ସେମାନେ ଖରାପ ବ୍ୟବହାର ପାଇଲେ ବି ଉତ୍ତେଜିତ ହୋଇ ଉଠିଥାନ୍ତି ।

*ମସ୍ତ* ହେବାର ପ୍ରାବଲ୍ୟ ବଢ଼ିଗଲେ ହାତୀଟି ଅଧିକ ଚିଡ଼ିଚିଡ଼ା ଓ ଉଦ୍ଧତ ହୋଇଉଠେ । ସେ କାହାକୁ ବି ମାନେ ନାହିଁ । ଏପରିକି ତା'ର ନିକଟ ଲୋକ ଓ ସେ ନିର୍ଭର କରୁଥିବା ଲୋକଙ୍କୁ ବି ସେ ଖାତିର କରେ ନାହିଁ । ପ୍ରଥମେ ତା'ର ଯତ୍ନ ନେଉଥିବା ଲୋକମାନଙ୍କ ଉପରେ ସେ ବିରକ୍ତି ପ୍ରକାଶ କରେ ଯେଉଁମାନେ ସବୁବେଳେ ତାକୁ ଘଷି ଧୋଇ ସଫା କରିଥାନ୍ତି । ଗୋଟିଏ ମଜାଳିଆ କଥା ହେଉଛି, ସେହି ସମୟରେ ସେ ଜଣେ ଅଜଣା ମାହୁନ୍ତର ବୋଲ ମାନିପାରେ । ତେଣୁ ଅଣ୍ଡିରା ହାତୀ ରାଗିଗଲେ, ଲୋକେ ତାକୁ ନିୟନ୍ତ୍ରଣ କରିବାର ଆଉ କୌଣସି ଉପାୟ ନ ଦେଖି, ବାହାରୁ ଜଣେ ମାହୁନ୍ତକୁ ଆଣି ତା' କାମ ତୁଲାନ୍ତି । ହାତୀ ଯଦି ଖୋଲା ଥାଏ, ତେବେ ଭୁଲାଇ ହେଉ ବା ଧମକାଇ ହେଉ କୌଣସିମତେ ବାନ୍ଧି ଦେବାକୁ ହୁଏ । ପ୍ରାୟ 9ମି. ଲମ୍ବର 2ଟି ଶିକୁଳି ଆଣି ଗୋଟିଏ ତା'ର ଆଗ ଗୋଡ଼ରେ ଓ ଆରଟି ପଛ ଗୋଡ଼ରେ ବାନ୍ଧି ଦିଆଯାଏ ।

ଅଭିଜ୍ଞ ମାହୁନ୍ତମାନେ ହାତୀ ତାଙ୍କର ନିୟନ୍ତ୍ରଣ ବାହାରକୁ ଯିବା ଆଗରୁ ତାକୁ ବାନ୍ଧି ପକାଇଥାନ୍ତି । ସେମାନଙ୍କୁ ହାତୀଶାଳରେ ରଖାଯାଇଥାଏ । ତାକୁ ଦିଆଯାଉଥିବା ଖାଦ୍ୟର ପରିମାଣ କମାଇ ଦିଆଯାଏ । ଖାଦ୍ୟ ସହିତ କିଛି ନିଦ ଔଷଧ ବି ମିଶାଇ ଦିଆଯାଏ । ଆଗ କାଳରେ ଏପରି ସମୟରେ ମାହୁନ୍ତମାନେ ଅଟାଗୁଳା ଭିତରେ ମେଞ୍ଚାଏ ଆପୁ ରଖି ହାତୀକୁ ଖୁଆଇ ଦେଉଥିଲେ । ଆଜିକାଲି ମାହୁନ୍ତମାନେ ଯଥେଷ୍ଟ ଅଧିକ ପରିମାଣର ବ୍ରୋମାଇଡ୍ ଦେଇ ଏହି କାମ ତୁଲାଉଛନ୍ତି । ଅଫିମ ବି ଏହି ସମୟରେ କାମ ଦେଇଥାଏ, ପ୍ରତିଦିନ ପ୍ରାୟ 450 ଗ୍ରାମ ନାସ ଖାଇବାକୁ ଦେଲେ ବି ହାତୀକୁ ଉତ୍ତେଜିତ ହେବାରୁ ବଞ୍ଚେଇ ରଖିବାରେ ସାହାଯ୍ୟ କରିପାରେ । ବାଲ୍‌ଟିମୋର୍ ପାର୍କରେ ହାତୀକୁ ପ୍ରତିଦିନ ନାସ ଖାଇବାକୁ ଦିଆଯାଇଥାଏ ।

*ମସ୍ତ* ଜନିତ ଉତ୍ତେଜନା ପୂରାପୂରି ନ କମିବା ଯାଏଁ, ହାତୀ ପାଖକୁ ଖଣ୍ଡେ ଦୂରରୁ ଖାଦ୍ୟ ଫିଙ୍ଗି ଦିଆଯାଇଥାଏ । ପ୍ରାୟ ତିନି ଚାରି ମାସ ଯାଏଁ ତା' ଦ୍ୱାରା କୌଣସି କାମ କରାଯାଏ ନାହିଁ । *ମସ୍ତ* ହେବାର ପ୍ରାରମ୍ଭିକ ଅବସ୍ଥାରେ ହୁଏତ ଅଳ୍ପ କାମ କରାଯାଇପାରେ ।

ଜଙ୍ଗଲରେ, *ମସ୍ତ* ହୋଇଥିବା ହାତୀମାନେ ନିଜ ମନଇଚ୍ଛା ବୁଲି ନ ପାରନ୍ତି । ସେମାନଙ୍କୁ ଅଧିକାଂଶ ସମୟରେ ଦଳ ଭିତରେ ହିଁ ଦେଖିବାକୁ ମିଳିଥାଏ । ବେଳେ ବେଳେ ସେମାନେ ଦଳରୁ କିଛି ସମୟ ପାଇଁ ଅଲଗା ରହନ୍ତି; କିନ୍ତୁ ବେଶି ଦୂରକୁ ଯାଆନ୍ତି ନାହିଁ । *ମସ୍ତ* ହାତୀର ଅସାଧାରଣ ବଳ ଥାଏ । ତେଣୁ ଅନ୍ୟ ଅଣ୍ଡିରା ହାତୀ ବି ଏହି ସମୟରେ ସେ ପାଖ ମାଡ଼ିବାକୁ ସାହସ କରି ନଥାନ୍ତି ।

ପୁରୁଣା କାଳିଆ ମାହୁନ୍ତମାନେ ହାତୀଙ୍କ *ମସ୍ତ* ଅବସ୍ଥା ସମ୍ପର୍କରେ ନାନା କଥା କହିଥାନ୍ତି । ସେମାନେ କହନ୍ତି *ମସ୍ତ* ରସ ହାତୀଙ୍କ ମୁଣ୍ଡରୁ ଝରିଥାଏ । ଏହା ବହିବାରେ ବାଧା ପାଇଲେ, ହାତୀର ମୁଣ୍ଡ ବିଗିଡ଼ିଯାଇଥାଏ । ସେମାନେ ଭାବନ୍ତି, ହାତୀର ଯୌନ ଲାଳସା ସାଙ୍ଗରେ ଏହାର

Digitized by srujanika@gmail.com

କୌଣସି ସମ୍ପର୍କ ଥାଇପାରେ । ମସ୍ତ ହୋଇଥିବା ହାତୀ 40 ଦିନ ଭିତରେ ଯଦି ତା'ର ସଙ୍ଗିନୀ ସହିତ ସହବାସ କରିବାର ସୁଯୋଗ ପାଇଯାଏ, ତେବେ ସେ ସନ୍ତୁଳିତ ହୋଇଯିବ । କିନ୍ତୁ ଏହି ଅବସ୍ଥାଟିର ସଠିକ୍ କାରଣ, ଗୋଟିଏ ହାତୀର ଜନନାଙ୍ଗ ପରିପକ୍ୱ ହେବା ସହିତ ଏହାର ସମ୍ପର୍କ ଓ ହାତୀର ଯୌନ ଲାଳସା ସହିତ ଏହାର ସମ୍ପର୍କକୁ ପୂରାପୂରି ଅଧ୍ୟୟନ କରାଯାଇପାରି ନାହିଁ ।

ନିକଟ ଅତୀତରେ ଏହି ଅବସ୍ଥାରୁ ଗୋଟିଏ ହାତୀ ପାଗଳ ପ୍ରାୟ ହୋଇଥିବାର ଉତ୍କୃଷ୍ଟ ଉଦାହରଣ ହେଉଛି ଉଦୟଗିରି । ଏହି ଅଣ୍ଡିରା ହାତୀଟି ରାଷ୍ଟ୍ରପତିଙ୍କ ଘୋଡ଼ାଶାଳରେ ଥିଲା ଓ ଜାତୀୟ ଉତ୍ସବଗୁଡ଼ିକରେ ଭାଗ ନେଉଥିଲା । ସେ ଆଠ ବର୍ଷର ହୋଇଥିଲାବେଳେ ତାକୁ ଆସାମର ଜଙ୍ଗଲରୁ ଧରାଯାଇଥିଲା । କାଜିରଙ୍ଗାର ବିଖ୍ୟାତ ହାତୀ ଆକବର ପରି ଏହାକୁ ଉନ୍ନତମାନର ତାଲିମ ଦିଆଯାଇଥିଲା । 1954 ମସିହାରେ ଗୋଟିଏ ଶୋଭାଯାତ୍ରାର ନେତୃତ୍ୱ ନେଉଥିଲାବେଳେ ସେ ଅସୁସ୍ଥ ହୋଇପଡ଼ିଲା । ତା'ପରେ ତା'ର ରକ୍ତହୀନତା (ନିମୋନିଆ) ଦେଖାଦେଲା । ତା'ପର ବର୍ଷ ତାକୁ ବାନ୍ଧିବାକୁ ଯାଉଥିବା ଜଣେ ଯତ୍ନକାରୀଙ୍କୁ ସେ ଆକ୍ରମଣ କଲା ଓ ପ୍ରାଣରେ ମାରିଦେଲା । ତା'ପରେ ପରେ ତାକୁ ଖାଇବାକୁ ଦିଆଗଲା । ସେ ତାକୁ ସାଙ୍ଗେ ସାଙ୍ଗେ ଖାଇନେଲା ଓ ତା'ପରେ ପ୍ରକୃତିସ୍ଥ ହୋଇଗଲା ।

ସେ ମସ୍ତ ହେବାର ସୂଚନା ଦେବାଠାରୁ ହିଁ କିଛି ସମୟ ପାଇଁ ତାକୁ ଶିକୁଳିରେ ବାନ୍ଧି ପକାଇବା ଦରକାର ଥିଲା । ଯେତେବେଳେ ଦେଖାଗଲା ଯେ ଆଗ ଅପେକ୍ଷା ତା' ଅବସ୍ଥାରେ ଉନ୍ନତି ଘଟିଛି, ତା'ର ଶିକୁଳି ଖୋଲି ଦିଆଗଲା । ଦିନେ ତାକୁ ଚଲାଇବାକୁ ନିଆ ଯାଉଥିବା ସମୟରେ ସେ ହଠାତ୍ ଉତ୍କ୍ଷିପ୍ତ ହୋଇପଡ଼ିଲା । ସେ ଆଗରେ ଯାଉଥିବା ଗୋଟିଏ ସାମରିକ ଗାଡ଼ି ପଛରେ ଗୋଡ଼ାଇ ଏହାକୁ ଆକ୍ରମଣ କଲା । ତା' ପରେ ସେ ଜଣେ ଲୋକକୁ ଗୋଡ଼ାଇଲା ଯିଏ ଗୋଟିଏ ଘର ଭିତରେ ପଶିଯାଇ ଅଳ୍ପକେ ବର୍ତ୍ତିଗଲା । ମାହୁନ୍ତ ଯଥେଷ୍ଟ ସାହସର ସହିତ ତାକୁ ତିନି ଘଣ୍ଟା କାଳ ଜଗିଲା ଓ ହାତୀଟିକୁ ନିୟନ୍ତ୍ରଣ କରିବା ପାଇଁ ଯଥାସମ୍ଭବ ଚେଷ୍ଟା କଲା । ତା'ର ସବୁ ଚେଷ୍ଟା ଯେତେବେଳେ ବିଫଳ ହୋଇଗଲା, ସେ ତଳକୁ ଡେଇଁ ପଡ଼ିଲା ଓ ପାଖରେ ଥିବା ଛାତରେ ଚଢ଼ିଗଲା । ଶେଷରେ ହାତୀଟିକୁ ଗୁଳିକରି ମାରିବାକୁ ପଡ଼ିଲା ।

ଆପାତତଃ, ଆସାମର ଜଙ୍ଗଲରୁ ଆସିଥିବା ଉଦୟଗିରି, ଦିଲ୍ଲୀର ପୂରା ଭିନ୍ନ ପ୍ରାକୃତିକ ପରିବେଶ ସହିତ ଖାପ ଖୁଆଇ ପାରିଲା ନାହିଁ । ସେ ଆଗରୁ ଅତିରିକ୍ତ ଥଣ୍ଡା, ଅତିରିକ୍ତ ଗରମ ଓ ଲମ୍ୱା ସମୟ ଧରି ମରୁଡ଼ି, ଯାହାକୁ ସେ ଦିଲ୍ଲୀରେ ସାମନା କରିଥିଲା, କେବେ ଚାଖି ନଥିଲା । 1956 ମସିହାର ଖରା ଦିନେ, ତାକୁ ଦେରାଡୁନ୍ ପଠାଇ ଦିଆ ଯାଇଥିଲା । ତା' ପର ବର୍ଷ ବି ଖରାଦିନେ ତାକୁ ଦେରାଡୁନ୍ ପଠାଯିବାର ଯେଉଁ ଯୋଜନା କରାଯାଇଥିଲା, ତାହା କାର୍ଯ୍ୟକାରୀ ହେବା ଆଗରୁ ସେ ପ୍ରାଣ ହରାଇ ସାରିଥିଲା ।

ଉତ୍ତେଜିତ ଥିବା ସମୟରେ ହାତୀଟି ଅସାଧାରଣ ବଳ ପ୍ରଦର୍ଶନ କରିଥାଏ । 1963 ମସିହା ଡିସେମ୍ବର 25 ତାରିଖରେ ଖବର କାଗଜରେ ଏକ ବିବରଣୀ ପ୍ରକାଶ ପାଇଥିଲା ଯେ

Digitized by srujanika@gmail.com

ଆରାହ ନିକଟସ୍ଥ ଜଗଦୀଶପୁର ନାମକ ଏକ ଜାଗାରେ ପିଲାଟିଏ ଖେଳଣା ଧରି ଖେଳିଲା ପରି ଗୋଟିଏ ପାଗଳ ହାତୀ ରାସ୍ତାକଡ଼ରେ ଠିଆ ହୋଇଥିବା ଗୋଟିଏ କାର୍‌କୁ ଶୁଣ୍ଢରେ ଉଠାଇନେଇ ଶୂନ୍ୟକୁ ଫିଙ୍ଗିଦେଲା । କାର୍‌ଟି ଗୋଟିଏ ଘରର ଛାତରେ ବାଡେ଼ଇ ହେଲା । ସୌଭାଗ୍ୟକୁ ଘଟଣାଟି ସମୟରେ ଗାଡ଼ି ଭିତରେ ଡ୍ରାଇଭର୍‌ଟି ନଥିଲା । ହାତୀଟି ତା' ଆଡ଼କୁ ମାଡ଼ି ଆସୁଥିବା ଦେଖି ସେ ଠିକ୍ ସମୟରେ ଗାଡ଼ି ଛାଡ଼ି ପଳାଇ ଯାଇଥିଲା, ଶେଷରେ ମାହୁନ୍ତ କୌଣସିମତେ ହାତୀଟିକୁ ନିୟନ୍ତ୍ରଣାଧୀନ କରିବାରେ ସଫଳ ହୋଇଥିଲା ।

## ଗଜମୁକ୍ତା

ସଂସ୍କୃତ ଲେଖକମାନେ ବିଶ୍ୱାସ କରୁଥିଲେ ଯେ ବେଳେ ବେଳେ କେତେକ ହାତୀ ଦେଖିବାକୁ ମିଳିଥାନ୍ତି, ଯାହାଙ୍କ ମୁଣ୍ଡରେ ଗୋଟିଏ ମୁକ୍ତା ଥାଏ । ଏହି ବିରଳ ମୁକ୍ତାଟିକୁ କୁହାଯାଏ *ଗଜମୁକ୍ତା* । *ଦେବୀପୁରାଣ* (7ମରୁ 9ମ ଶତାବ୍ଦୀ) ଅନୁସାରେ, ଗୋଟିଏ ସିଂହ ଏକ ହାତୀର ମୁଣ୍ଡକୁ ଦୁଇଫାଳ କରି ଚିରିଦିଏ ଓ ଗଜମୁକ୍ତାଟି ନେଇ ପଳାଏ ।[1] କୃଷ୍ଣ ଯେତେବେଳେ ରୈବତକକୁ ଆକ୍ରମଣ କରିଥିଲେ, ସେତେବେଳେ ଅନେକ ରାଜା କୃଷ୍ଣଙ୍କ ସହିତ ଯୋଗ ଦେଇଥିଲେ । ସେମାନେ ସିଂହଙ୍କ densରେ ଶିବିର ରଖିଥିଲେ । ସେଠାରେ ଗଜମୁକ୍ତା ଭରି ରହିଥିଲା । ସିଂହମାନେ ହାତୀଙ୍କର ମାଂସ ଖାଇ ଦେଇଥିଲେ ଓ ମୁକ୍ତାଗୁଡ଼ିକ ରଖିଦେଇଥିଲେ ।[2] ମଘ ଶ୍ରୀକୃଷ୍ଣଙ୍କର ସେନାର ହାତୀଙ୍କର ଗାଧୁଆର ବର୍ଣ୍ଣନା କରି କହିଛନ୍ତି ଯେ, ଏହି ହାତୀମାନେ ସଫା ହେବା ପାଇଁ ଯେତେବେଳେ ନଦୀ ଭିତରେ ପଶୁଥିଲେ ଓ ଶୁଣ୍ଢ ସାହାଯ୍ୟରେ ଉପରକୁ ପାଣି ଫିଙ୍ଗୁଥିଲେ ସେତେବେଳେ ମନେ ହେଉଥିଲା ଯେପରି ମୁକ୍ତା ବରଷୁଛି ।[3]

କବିଙ୍କ କଳ୍ପନାରେ ଅର୍ଦ୍ଧନାରୀଶ୍ୱରଙ୍କ ବେକରେ ଗୋଟିଏ ପଟେ ଗଜମୁକ୍ତାର ହାର ଓ ଆରପଟେ ହାତୀ ଖପୁରୀର ହାର ଝୁଲୁଛି ।[4]

ଆଜିକାର ପ୍ରାଣୀବିଜ୍ଞାନ ଗଜମୁକ୍ତାକୁ ପୂରାପୂରି କାଳ୍ପନିକ କହି ଅବିଶ୍ୱାସ କରୁଛି । କିନ୍ତୁ ଏହା ଲକ୍ଷ୍ୟ କରାଯାଇଛି ଯେ, କେତେକ ହାତୀଙ୍କର *ମସ୍ତ* ରସ ଏତେ ବହଳିଆ ଯେ ମୁହଁ ତଳକୁ ବୋହିଗଲା ବେଳେ ଏହା ଶୁଖି ଟାଣ ହୋଇଯାଏ । ସେତେବେଳେ ଏହାକୁ କୋରି ବାହାର କରିନିଆଯାଏ ଓ ଏହାକୁ ଚୂରି ମୁକ୍ତା ପରି ଦାନାରେ ପରିଣତ କରି ଦିଆଯାଏ । ଏହାକୁ ମୁକ୍ତା ପରି ବ୍ୟବହାର କରାଯାଇଥାଏ । 1924ରେ ଚିତ୍ତାଗଙ୍ଗ ପର୍ବତରେ, ଜଣେ ଜଙ୍ଗଲ ବିଭାଗର ଅଫିସର ଧରାଯାଇଥିବା ଏକ ଦନ୍ତା ହାତୀକୁ ମାରିବାକୁ ବାଧ ହେଲେ । ଏହାର ଗୋଟିଏ ଦାନ୍ତ ଭିତରୁ ଗୋଟିଏ କୁନି ଗୋଲିଟିଏ ବାହାରିଥିଲା ଯାହାର ଆକାର ଆମର କଣି ନଖ ପରି ହେବ । ଏହା ଏକ ମୁକ୍ତା ପରି ଦେଖାଯାଉଥିଲା, ଯଦିଓ ଟିକେ ଖଦଖଦଡ଼ିଆ ଥିଲା । ଏହାକୁ ଦେଖି ସେଠାରେ ଉପସ୍ଥିତ ଥିବା ମାହୁନ୍ତ ଓ ଅନ୍ୟମାନେ ଉଲ୍ଲସି ଉଠିଲେ ଓ କହିଲେ ଯେ ଏହା ଗଜମୁକ୍ତା ।

---

[1] ଅଧ୍ୟାୟ 35.
[2] *ଶିଶୁପାଳ ବଧ*, V, 12.
[3] ତତ୍ରୈବ, V, 30.
[4] *ବିଦ୍ୟାପତିଙ୍କ ସୌ ଗାଠା*, 44.

Digitized by srujanika@gmail.com

## ଦୁର୍ଘଟଣା

ଥରେ ଆସାମରେ ଗୋଟିଏ ରେଳଗାଡ଼ି ଏକ ହାତୀ ପଲ ସହିତ ଧକ୍କା ହୋଇଗଲା ଓ ପଥଚ୍ୟୁତ ହୋଇଗଲା । 1963 ମସିହା ଡିସେମ୍ବରରେ ସୋନପୁର ବଳଦମେଳାରୁ ଗୋଟିଏ ହାତୀକୁ ଉତ୍ତର ପ୍ରଦେଶର କାଶିଆ ନାମକ ଏକ ଜାଗାକୁ ନିଆଯାଉଥିଲା । ଗୋଟିଏ ଆମ୍ବ କିଆରୀ ମଧ ଦେଇ ଯିବା ସମୟରେ ଅନ୍ୟ କୌଣସି ପଶୁ ବା ଅନ୍ୟ କିଛିକୁ ଦେଖି ହାତୀଟି ଚମକି ପଡ଼ିଲା ଓ ଏକ କୂଅ ମଧରେ ଗଳି ପଡ଼ିଲା । ଗାଁ ଲୋକ ଯେତେବେଳେ ଏହି କଥାଟି ଶୁଣିଲେ ଗାଁଟା ଯାକର ଲୋକ ସେଠାରେ ରୁଣ୍ଡ ହୋଇଗଲେ । ଦଉଡ଼ି ପକାଇ ପ୍ରାୟ ହଜାରେ ଲୋକ ତାକୁ ବାହାରକୁ ଭିଡ଼ି ଆଣିଲେ ।

ଜଙ୍ଗଲରେ ବଣୁଆ ହାତୀମାନେ ବେଳେ ବେଳେ କାଦୁଅା ଜମିରେ ଲାଖି ଯାଆନ୍ତି ଓ ଯେତେ ଚେଷ୍ଟା କଲେ ବି ସେଠାରୁ ବାହାରି ପାରନ୍ତି ନାହିଁ । ସେମାନେ ସେଥିରୁ ବାହାରିବାକୁ ଯେତେ ଭିଡ଼ି ଓଟାରି ହୁଅନ୍ତି ସେମାନେ ତା' ଭିତରେ ସେତିକି ପୋତି ହୋଇପଡ଼ନ୍ତି । ତାଙ୍କର ଏଡ଼େ ବିଶାଳ ଦେହ ଏଥିରେ କାମ କରିପାରେ ନାହିଁ । ଏଥିରୁ ମୁକୁଳି ନପାରି ଖାଦ୍ୟ ଓ ପାଣିରୁ ବଞ୍ଚିତ ହୋଇ ଅନେକ ହାତୀ ଅତି ଧୀର ଓ ଦୁଃଖଦ ମୃତ୍ୟୁ ବରଣ କରିଥାନ୍ତି । କିନ୍ତୁ ବିପଦଟି ଅନେକ ହାତୀପଲଙ୍କ ଜୀବନରେ ଆସିଥାଏ । ଏହା ଦେଖାଯାଇଛି ଯେ କୌଣସି ହାତୀ ଯଦି ପଙ୍କ ବା କାଦୁଅରେ ଲାଖିଯାଏ, ତେବେ ଦଳର ଅନ୍ୟ ହାତୀମାନେ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । ସେମାନେ ସେହି କାଦୁଅରେ କାଠ ଗଣ୍ଡି ଆଣି ପକାନ୍ତି ଓ ବିପଦଗ୍ରସ୍ତ ହାତୀଟି ଏଥିରେ ପାଦ ପକାଇ ଉଠିଆସେ ।

ଥରେ ଧିକାଲାର କରବେଟ୍ ଜାତୀୟ ପାର୍କରେ ବୁଲୁଥିବା ଦଳେ ଦର୍ଶକଙ୍କ ମଧରେ ଏକ ନବ-ବିବାହିତ ଦମ୍ପତି ଥିଲେ । ସେମାନେ ନିଜର ମଧୁଚନ୍ଦ୍ରିକା କଟାଇବା ପାଇଁ ମୁମ୍ବାଇ (ଆଗର ବମ୍ବେ)ରୁ ଏଠାକୁ ଆସିଥାନ୍ତି । ସେମାନେ ନୈନିତାଲ ବାହାରିଥାନ୍ତି । ବାଟରେ ଏହି ପାର୍କରେ ସେମାନେ ଦୁଇତିନିଦିନ ପାଇଁ ଅଟକିଥାନ୍ତି । ଏହି ପାର୍କରେ ଥିବା ଗୋଟିଏ ମାଈ ହାତୀ ଉପରେ ବସି ବୁଲିବା ପାଇଁ ତାଙ୍କ ପାଇଁ ବ୍ୟବସ୍ଥା କରାଗଲା । ସେମାନଙ୍କ ସହିତ ହାତୀ ଉପରେ ଜଣେ ମାହୁନ୍ତ ଓ ବନ୍ଧୁକଧାରୀ ଜଗୁଆଳୀ ବସିଲେ । ସେ ଦିନର କାର୍ଯ୍ୟକ୍ରମ ଥିଲା ରାମଗଙ୍ଗା କୂଳରେ ଥିବା ଶିସମ ଜଙ୍ଗଲରେ ସେହି ଦମ୍ପତିଙ୍କୁ ହରିଣ ଦେଖାଯିବ । ଏପରି କୌଣସି ନିର୍ଦ୍ଦିଷ୍ଟ ଜାଗା ନଥିଲା ଯେଉଁଠି ଚାଲି ଚାଲି ନଦୀକୁ ପାର କରାଯାଇପାରିବ । ହାତୀ ଯେ କୌଣସି ଜାଗାରେ ନଈ ପାର ହୋଇପାରେ, ଯଦି ସେଠାରେ ବଡ଼ ପଥର ଓ ଶିଉଳି ନଥାଏ, କାରଣ ଏଥିରେ ତା' ଗୋଡ଼ ଖସିଯାଏ ।

ସବୁ ଲୋକଙ୍କୁ ନେଇ ଗୋଟିଏ ଜାଗାରେ ନଦୀ ପାର ହେବା ସମୟରେ ନଦୀ ମଝିରେ ଗୋଟିଏ ଜାଗାରେ ବାଲିରେ ହାତୀର ଗୋଡ଼ ଲାଖିଗଲା, ମାହୁନ୍ତ ତା'ର ପାରୁପଣେ ଚେଷ୍ଟା କରି ବି ଏଥିରୁ ତା' ଗୋଡ଼କୁ ଉଠାଇପାରିଲା ନାହିଁ । ନବ ବିବାହିତ ଦମ୍ପତି ଏଣେ ଭୟରେ ଥରୁଥାନ୍ତି । ଏବେ ଜଗୁଆଳୀଟି ତାଙ୍କର କାମରେ ଆସିଲା, ସେ ଉଭୟଙ୍କୁ ପିଠିରେ ବସାଇ ନଈ ପାର କରାଇଲା । ଏଥର ହାତୀକୁ ବାହାର କରିବାକୁ ଚେଷ୍ଟା କରାଗଲା । ଆଶା କରାଯାଉଥିଲା

Digitized by srujanika@gmail.com

ଯେ, ଉପରୁ ଓଜନ ଖସିଗଲା ପରେ ସେ ସେଥିରୁ ବାହାରି ଯାଇପାରିବ । ମାହୁନ୍ତ ନିଜ ଆଙ୍କୁଶରେ ତାକୁ ଥରକୁ ଥର ଆଘାତ କରିବାରେ ଲାଗିଲା । କିନ୍ତୁ ସେ ସେହି ଗାତରୁ ବାହାରିବା ବଦଳରେ ସେଥିରେ ଅଧିକରୁ ଅଧିକ ବୁଡ଼ିବାରେ ଲାଗିଲା । ଏଥିରେ ହାତୀଟି ଯଥେଷ୍ଟ ଡରିଗଲା ଓ ଜୋରରେ ଚିତ୍କାର କରିବାରେ ଲାଗିଲା । ମଧୁଚନ୍ଦ୍ରିକା ପାଇଁ ଆସିଥିବା ଦମ୍ପତ୍ତି ନଦୀ ସେପଟୁ ଏହି ଦୃଶ୍ୟକୁ ଦେଖି ଥରିବାରେ ଲାଗିଲେ ।

ଜଗୁଆଳୀଟି ହାତୀଟିକୁ ବାହାର କରିବା ପାଇଁ ସେ ଯାଏଁ ଯଥା ସମ୍ଭବ ଚେଷ୍ଟା ଚଳାଇଥାଏ । ଏହି ସମୟରେ ପାଖ ଜଙ୍ଗଲରୁ ବଣୁଆ ହାତୀଙ୍କ ଗର୍ଜନ ଶୁଣାଗଲା । ବିପଦଗ୍ରସ୍ତା ମାଈ ହାତୀଟିର ଆର୍ତ୍ତନାଦର ପ୍ରତିକ୍ରିୟା ଥିଲା । ସେମାନେ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ । ନଦୀ ବାଲି ଟପି ସେମାନେ ନଦୀ ପାଖରେ ପହଞ୍ଚିଗଲେ । ଯୁବ ଦମ୍ପତ୍ତି ସେତେବେଳକୁ ଡରିଯାଇ ଚେତା ହରାଇବାକୁ ବସିଲେଣି । କିନ୍ତୁ ଜଗୁଆଳୀଟି ଆଶା ହରାଇ ନଥାଏ । ସେ ଆକାଶକୁ ଫାଙ୍କା ଗୁଳି ଚଳାଇ ଏହି ହାତୀ ଦୁଇଟିକୁ ତଡ଼ିଦେଲା । ପାର୍କରୁ ଲୋକମାନେ ସାହାଯ୍ୟ କରିବା ପାଇଁ ସେଠାରେ ପହଞ୍ଚିଗଲେ । ଅନେକ ପରିଶ୍ରମ କରି ଯଥେଷ୍ଟ କଷ୍ଟରେ ହାତୀଟିକୁ ସେଥିରୁ ମୁକୁଳା ଯାଇପାରିଲା ।

ହାତୀଙ୍କ ପାଇଁ ବାଘମାନେ ଆଉ ଏକ ବିପଦର କାରଣ ହୋଇଥାନ୍ତି । ବାଘ ହାତୀ ଛୁଆଙ୍କୁ ସହଜରେ ମାରି ଦେଇପାରେ ଓ ମନଖୁସିରେ ତା' ମାଂସକୁ ଖାଇଥାଏ । ରାମାୟଣରେ ମାଈ ହାତୀମାନେ ସିଂହକୁ ଡରିବାର ଅନେକ ଉଦାହରଣ ଦେଖିବାକୁ ମିଳେ । ହାତୀ ବାଘ ମଧ୍ୟରେ ଲଢ଼େଇ ଲାଗିଲେ ବାଘ ଯଦି ହାତୀର ପିଠି ଉପରକୁ ଉଠିଯାଏ, ତେବେ ହାତୀ ତାକୁ ତଳେ ପକାଇ ଦିଏ ଓ ଗୋଡ଼ରେ ଦଳିଦିଏ । ବାଘ ଯଦି ଆଗପଟୁ ଆକ୍ରମଣ କରେ, ତେବେ ହାତୀ ତା ଆଗ ଗୋଡ଼କୁ ବଙ୍କେଇ ଦେଇ ମୁଣ୍ଡ ଓ ଦାନ୍ତ ସାହାଯ୍ୟରେ ବାଘର ମୁକାବିଲା କରିବାକୁ ଚେଷ୍ଟା କରେ । ଏହି ସମୟରେ ସେ ଯଥେଷ୍ଟ ସକ୍ରିୟତା, ସାହସ ଓ ଦକ୍ଷତା ପ୍ରଦର୍ଶନ କରିଥାଏ । କାଜିରଙ୍ଗା ଜାତୀୟ ପାର୍କରେ ଥରେ ଗୋଟିଏ ପୋଷା ହାତୀ ନାତ ମାରି ଗୋଟିଏ ଆହତ ବାଘକୁ ପ୍ରାଣରେ ମାରି ଦେଇଥିଲା । ଘଟଣାଟିର ଛଅ ମାସ ପରେ ହାତୀଟି ବି ମରିଯାଇଥିଲା । ସେ ଯଥେଷ୍ଟ ବୁଢ଼ା ହୋଇଯାଇଥିଲା ।

ଗଣ୍ଡା ସହଜରେ ହାତୀକୁ ଡରେଇ ଦେଇଥାଏ । କାଜିରଙ୍ଗା ଜାତୀୟ ପାର୍କରେ ଥରେ ଦଳେ ଲୋକ ଗଣ୍ଡାଙ୍କ ଚରିବା ଦେଖିବା ପାଇଁ ବାହାରିଲେ । ସେମାନେ ଆକବର ନାମକ ଗୋଟିଏ ବୟସ୍କ ହାତୀ ଉପରେ ବସିଥାନ୍ତି । ହଠାତ୍ ଦଳେ ଗଣ୍ଡା ତାକୁ ଆକ୍ରମଣ କଲେ । ମୁକାବିଲା କରିବାରେ ଆକବର ଓସ୍ତାଦ ଥିଲା । ଆଗ ଗୋଡ଼କୁ ଭାଙ୍ଗିଦେଇ, ଶୁଣ୍ଢକୁ ମୋଡ଼ି ସେ ଦୁଇ ଦାନ୍ତ ମଝିରେ ତାକୁ ସୁରକ୍ଷିତ ରଖିଲା ଓ ତା' ଦାନ୍ତକୁ ଦେଖାଇ ଝପଟିଗଲା । ଭୀଷଣ ଆଘାତ ପାଇ ଓ କଷ୍ଟରେ ଚିତ୍କାର କରି ଗଣ୍ଡା ଦୁଇଟି ପାଖ ବୁଦା ଆଡ଼କୁ ପଳାଇଗଲେ । ଲଢ଼େଇ ଚାଲିଥିଲାବେଳେ ଆକବର ସତର୍କ ଥିଲା ଯେପରି ମାହୁନ୍ତ ଓ ଅନ୍ୟ ଯାତ୍ରୀମାନେ ଯେପରି ତା' ପିଠିରୁ ତଳେ ଗଡ଼ି ନ ପଡ଼ନ୍ତି ।

Digitized by srujanika@gmail.com

## ହାତୀ ଶିକାର

ବାଲ୍ମୀକିଙ୍କ ସମୟରେ ହାତୀଙ୍କୁ ଅନ୍ୟ ବଣୁଆ ଜୀବଜନ୍ତୁଙ୍କ ପରି ଶିକାର କରାଯାଉଥିଲା । ସେମାନଙ୍କୁ ମାରିବା ଏତେ ସହଜ ନଥିଲା; ତେଣୁ ସେମାନଙ୍କ ପାଇଁ ବିଷାକ୍ତ ବର୍ଚ୍ଛା ପ୍ରୟୋଗ କରାଯାଉଥିଲା । କୁହାଯାଇଛି ଯେ ରାମ ଯେତେବେଳେ ସୀତାଙ୍କୁ ତାଙ୍କ ସହ ବନବାସରେ ଯିବା ପାଇଁ ମନା କଲେ, ଏହା ତାଙ୍କୁ ଏକ ମାଈହାତୀକୁ ବିଷାକ୍ତ ବର୍ଚ୍ଛା ବିଦ୍ଧ କଲାପରି କଷ୍ଟ ଦେଲା । ଶ୍ରବଣ କୁମାରଙ୍କୁ, ହାତୀ ବୋଲି ଭୁଲ ବୁଝି, ଦଶରଥ ଯେଉଁ ଶର ମାରିଥିଲେ ଏହାର ବିଷ ବୋଡ଼ା ସାପର ବିଷ ସମାନ ଅତ୍ୟନ୍ତ ତୀବ୍ର ଥିଲା । ଶ୍ରବଣକୁମାର ପାଣି ଆଣିବା ପାଇଁ ନଦୀରେ ଗୋଟିଏ କଳସୀ ବୁଡ଼ାଇଥିଲା । ଏଥିରେ ପାଣି ପଶିବା ସମୟରେ ଯେଉଁ ଶବ୍ଦ ସୃଷ୍ଟି ହୋଇଥିଲା, ଏହାକୁ ଦଶରଥ ଭାବିଲେ, ଗୋଟିଏ ହାତୀ ନଦୀରେ ପାଣି ପିଉଛି । ଆଜିକାଲି ଅବଶ୍ୟ ବନ୍ଧୁକ ଦ୍ବାରା ହାତୀଙ୍କୁ ସହଜରେ ଗୁଳି କରି ମରାଯାଇପାରୁଛି । ଥରେ ଗୋଟିଏ ମାଈ ହାତୀକୁ ଗୋଟିଏ 500 ସିଙ୍ଗଲ୍ ବୋର୍ ରାଇଫଲ୍ ଦ୍ବାରା ଗୁଳି କରି ମରାଯାଇଥିଲା । ଗୁଳିଟି ହାତୀର କାନମୂଳଠାରୁ ପ୍ରାୟ 23 ସେ.ମି. ତଳେ ବାଜି ତା'ର ହୃତପିଣ୍ଡକୁ ଭେଦି ଯାଇଥିଲା ଓ ପ୍ରାୟ ଏକ ମିଟରେ ଗଭୀର ଗାତ କରି ପକାଇଥିଲା । କିନ୍ତୁ ଗୁଳିଟି ଠିକ୍ ଜାଗାରେ ନ ବାଜିଲେ, ଏହି 7 ଟନ୍ ବିଶିଷ୍ଟ ପଶୁଟି ଯେଉଁ ବେଗରେ ଓଲଟା ଆକ୍ରମଣ କରେ, ତାହା ନିଜେ ନ ଦେଖିଲେ ଶୁଣି ବିଶ୍ୱାସ କରି ହେବନାହିଁ । ଗୁଳିଟି କପାଳରେ ବାଜିଲେ ହାତୀ ସାଙ୍ଗେ ସାଙ୍ଗେ ମରିଯାଇଥାଏ ।

Digitized by srujanika@gmail.com

5

# ହାତୀଙ୍କ ରୋଗ ଓ ଉପକାରିତା

## ବିଭିନ୍ନ ରୋଗ

ହାତୀଙ୍କୁ ଅନେକ ପ୍ରକାରର ରୋଗ ଧରିଥାଏ । ହାତୀଙ୍କୁ ଜ୍ୱର ହେବା ବିଷୟ *ରାମାୟଣ*ରେ ଲେଖାଅଛି । ସେମାନଙ୍କୁ ଆନ୍ତ୍ରିକ ଜ୍ୱର, ବସନ୍ତ ଓ ପାଟି-ପାଦ ରୋଗ ହୋଇଥାଏ । ପାଗଳା କୁକୁର କାମୁଡ଼ିଲେ ତାଙ୍କୁ ସମୟ ସମୟରେ ଜଳାତଙ୍କ ରୋଗ ବି ହୋଇଥାଏ । ଉତ୍ତର ଭାରତର ଅତିରିକ୍ତ ଉତ୍ତାପ ହାତୀଙ୍କ ପାଇଁ ଅସହ୍ୟ ହୋଇପଡ଼ିଥାଏ । ଏହା ତାଙ୍କୁ ସୁହାଇ ନଥାଏ । 1962 ମସିହା ଫେବୃଆରୀ ମାସରେ ଦଳେ ସାଧୁ ତାଙ୍କର ହାତୀ ସହିତ ଗୋଟିଏ ସହର ବାହାରେ ତମ୍ବୁ ପକାଇଥାନ୍ତି । ସେମାନେ ତାଙ୍କ ହାତୀଟିକୁ ରାତିରେ ଘୋଡ଼ାଇ ହେବା ପାଇଁ କୌଣସି ଅଖା ବା ଲୁଗା ବା ଆଶ୍ରୟ ଯୋଗାଇ ପାରିଲେ ନାହିଁ ।  ହାତୀଟି ଥଣ୍ଡାରେ ମରିଗଲା ।



Digitized by srujanika@gmail.com

କୌଣସି ହାତୀର ଦେହ ଯଦି କାକୁଆ ହୋଇଯାଏ, ତେବେ ତାକୁ ନିଉମୋନିଆ ବା ପ୍ଲିଉରୋନିଉମୋନିଆ ଧରିବାର ସମ୍ଭାବନା ଥାଏ । *ଖେଦା* କାମରେ ଯଥେଷ୍ଟ ଖଟଣିରେ ହାତୀଙ୍କ ଦେହ ଯେତେବେଳେ ଗରମ ହୋଇଯାଇଥାଏ, ସେ ସମୟରେ ତାକୁ ଥଣ୍ଡା ପାଣି ପିଆଇବା ବା ଗାଧୋଇ ଦେବା ବୁଦ୍ଧିମାନର କାମ ନୁହେଁ । ଏଥିଯୋଗୁଁ ତାଙ୍କୁ ନିଉମୋନିଆ ଧରିପାରେ ବା ପେଟ ମାରିପାରେ । କିନ୍ତୁ ଦକ୍ଷିଣ ଭାରତରେ ବିଚାରଟି ଏହାର ଠିକ୍ ଓଲଟା ଅଟେ । ସେଠାରେ ଗୋଟିଏ ହାତୀକୁ ନୂଆରେ ଧରିଲା ପରେ ସେମାନେ ତାକୁ ପ୍ରଚୁର ପାଣି ପିଇବାକୁ ଦିଅନ୍ତି ଯେପରି ସେ ଶାନ୍ତ ହୋଇଯିବ ।

ବଣୁଆ ହାତୀ ଯେତେବେଳେ ମଣିଷଙ୍କର ବସତିକୁ ଆକ୍ରମଣ କରନ୍ତି, ସେତେବେଳେ ସେମାନେ ଯାହା ପାଆନ୍ତି ଖାଇଯାଆନ୍ତି – ଅଟା, ଗୁଡ଼ ଏପରିକି ଅଫିମ ମଧ୍ୟ । ବେଳେ ବେଳେ ଅତିରିକ୍ତ ଖାଇବା ଯୋଗୁଁ ବା ତାକୁ ସୁହାଉ ନଥିବା ଖାଦ୍ୟ ଖାଇ ହାତୀ ସବୁ ବଦହଜମୀ ଯୋଗୁଁ ଅସୁସ୍ଥ ହୋଇପଡ଼ନ୍ତି । ଏପରି ଅନେକ ଉଦାହରଣ ରହିଛି ଯେତେବେଳେ ହାତୀମାନେ ଏତେ ବେମାର ହୋଇପଡ଼ନ୍ତି ଯେ, ସେମାନେ ଅନେକ ଦିନ ଧରି ଭୂମିରେ ପଡ଼ିରହନ୍ତି, ଜମା ଚଳପ୍ରଚଳ ହୋଇପାରନ୍ତି ନାହିଁ । ଉତ୍ତର ପ୍ରଦେଶର ବିଜ୍‌ନୋର୍‌ର ଖାରା ଜଙ୍ଗଲରେ, ଥରେ ଗୋଟିଏ ଅଣ୍ଡିରା ହାତୀ କାଠ କଟାଳୀଙ୍କ କୁଡ଼ିଆରେ ଚଢ଼ାଉ କଲା । ଏହା ଥିଲା 1966 ମସିହା ଖରାଦିନର କଥା । ସେଠାକାର ଠିକାଦାର ମୂଲିଆମାନଙ୍କୁ ଦେବା ପାଇଁ ସେଠାରେ 200 କି.ଗ୍ରା. ଅଫିମ ଓ 40 କିଲୋ ଗୁଡ଼ ରଖିଥିଲା । ଦନ୍ତା ହାତୀଟି ଏଥିରୁ ଯେତେ ପାରିଲା ଖାଇଗଲା ଓ ବାକିତକକୁ ସେଠାରେ ଥିବା ଚାରି କଳସୀ ପାଣିରେ ଧୋଇଦେଲା । ତା'ପରେ ଅଫିମ ତା' କାମ ଆରମ୍ଭ କଲା, ତା'ର ମୁଣ୍ଡ ଘୂରାଇଲା ଓ ସେଠାରେ ସେ ଟଳି ପଡ଼ିଲା । ତାକୁ ଅତିସାର (ଡାଏରିଆ) ଧରିଲା । ପୂରା 15 ଦିନ ଧରି ସେ ସେଠାରେ ଅଚେତ ଅବସ୍ଥାରେ ପଡ଼ି ରହିଲା । ଝାଡ଼ାରେ ଅଫିମତକ ପୂରାପୂରି ବାହାରିଗଲା ପରେ ସେ ପୁଣି ସୁସ୍ଥ ହୋଇଗଲା ଓ ଉଠି ଜଙ୍ଗଲକୁ ଫେରିଗଲା ।

ଅନ୍ତନାଳୀରେ ଅଣୁଜୀବଙ୍କ ସଂକ୍ରମଣ ଯୋଗୁଁ ହାତୀଙ୍କର ହଜମ ପ୍ରକ୍ରିୟାରେ ବାରମ୍ବାର ଅସୁବିଧା ଦେଖାଦେଇଥାଏ । ଏଥିରୁ ରକ୍ଷା ପାଇବା ପାଇଁ ହାତୀମାନେ ବିଭିନ୍ନ ପ୍ରାକୃତିକ ପ୍ରତିକାର କରିଥାନ୍ତି । ଏଥିପାଇଁ ସେମାନେ ମୁଖ୍ୟତଃ ମାଟି ଓ ପାଣିରେ ଥିବା ବିଭିନ୍ନ ଧାତବ ଲବଣ ଉପରେ ନିର୍ଭର କରିଥାଆନ୍ତି । ଏହି ମାଟି କେଉଁଠାରେ ମିଳେ ତାହା ହାତୀକୁ ଜଣାଥାଏ । ଏହି ଜାଗାଗୁଡ଼ିକ ଲୁଣାଭୂମି ରୂପେ ଜଣାଶୁଣା ।

ଆଉ ଏକ ରୋଗରେ ହାତୀ ବହୁତ ଝଡ଼ିଯାଏ । ସେ ବହୁତ ଦୁର୍ବଳ ହୋଇଯିବା ସାଙ୍ଗକୁ ତା'ର ଦେହରେ ଥିବା ରନ୍ଧ୍ରଗୁଡ଼ିକରେ ପାଣି ଜମିଯାଇଥାଏ । ଏହି ଅବସ୍ଥାରେ ଥିଲେ ହାତୀକୁ ମନଇଚ୍ଛା ଚରିବାକୁ ଛାଡ଼ି ଦିଆଯାଏ ।

1967 ମସିହା ମେ' ମାସରେ ଉତ୍ତରପ୍ରଦେଶର *ତେରାଇ* ଜଙ୍ଗଲରେ ମୁଁ ଦେଖିଲି ଗୋଟିଏ ମାଈ ହାତୀର ପଛଗୋଡ଼ର ବାମ ପଟେ ଗୋଟିଏ ବିରାଟ ଫୁଲା ରହିଛି । ସେ ଛୋଟେଇ ଛୋଟେଇ ଚାଲୁଥିଲା । କୌଣସି ବିପଦ ସୂଚନା ପାଇ ହାତୀ ପଲଟି ଦଉଡ଼ି ପଳାଇବା ସମୟରେ ସେ ସବୁବେଳେ ପଛରେ ପଡ଼ିଯାଉଥିଲା । ଏହି ଫୁଲାଟି ଅ ଗରୁ ଏହି ଜାଗାଟି ଭାଙ୍ଗିଯାଇ

Digitized by srujanika@gmail.com

ହୋଇଥାଇପାରେ, ଯାହା ଏବେ ଭଲ ହୋଇଯାଇଥିଲା ବା କୌଣସି ବଥ ବା ଟ୍ୟୁମର୍ (ଅର୍ବୁଦ) ଯୋଗୁଁ ହୋଇଥିଲା । ହାତୀଙ୍କୁ ବାତ ବି ଧରିଥାଏ । ଏହା ବି ତା'ର ଛୋଟେଇବାର କାରଣ ହୋଇଥାଇପାରେ ।

ହାତୀଙ୍କୁ ପ୍ରଥମେ ଜଙ୍ଗଲରେ ଯେତେବେଳେ ଧରାଯାଏ, ସେତେବେଳେ ତାଙ୍କ ଦେହରେ ଅନେକ କ୍ଷତ ଥାଏ । ଏହା ତାଙ୍କ ପାଇଁ ଖୋଳା ଯାଇଥିବା ଗାତରେ ପଡ଼ିବା ଦ୍ୱାରା ବା ତାଙ୍କୁ କାବୁ କରିବା ପାଇଁ ବନ୍ଧା ଯାଇଥିବା ଦଉଡ଼ି ଦ୍ୱାରା ହୋଇଥାଇପାରେ । କେତେକ କ୍ଷତ ଏତେ ଗଭୀର ହୋଇଥାଏ ଯେ ଅନଭିଜ୍ଞ ଲୋକ ଏହାକୁ ଦେଖିଲେ ନିଶ୍ଚୟ ଡରିଯିବ । ପ୍ରକୃତରେ ଏଗୁଡ଼ିକ ବିଶେଷ ଗୁରୁତର ନଥାଏ ଓ ଏଗୁଡ଼ିକ ବେଶ୍ ଶୀଘ୍ର ଶୁଖିଯାଏ । ଦଉଡ଼ି ଦ୍ୱାରା ହୋଇଥି‌ । କ୍ଷତଗୁଡ଼ିକ ବେଳେ ବେଳେ ଗୁରୁତର ହୋଇଥାଏ । ଦଉଡ଼ି ଯୋଗୁଁ ଯେପରି ହାତୀଙ୍କର କୌଣ‌ ଶିରା ବା ସ୍ନାୟୁ କଟି ନଯାଏ, ସେଥିପ୍ରତି ଯଥେଷ୍ଟ ଯତ୍ନବାନ୍ ହେବା ଉଚିତ୍ । ଏହାଛଡ଼ା କେନ୍ଦ୍ରରେ ସୁରକ୍ଷିତ ହୋଇଯିବା ପରେ ପରେ ହାତୀଙ୍କର ଦଉଡ଼ିଗୁଡ଼ିକୁ ଢିଲା କରି ଦିଆଯିବା ଉଚିତ ।

ଖେଦା କାମ ସମୟରେ ଗୋଟିଏ ଦନ୍ତାହାତୀର ସବୁଠୁ ବଡ଼ ବଳ – ଦାନ୍ତ ହିଁ ତା'ର ବିପକ୍ଷରେ କାମ କରିଥାଏ, ସେଥିରେ ସେ ଯେତେ ଅଧିକ ଲଢ଼େଇ କରେ ସେତିକି ଚଉଡ଼ା ଓ ଗଭୀର କ୍ଷତ ସବୁ ଅର୍ଜନ କରେ । ତାକୁ ନିୟନ୍ତ୍ରଣରେ ରଖିବା ପାଇଁ ଯଥେଷ୍ଟ ବଳ ଓ ଚେଷ୍ଟା ଲୋଡ଼ା ହୋଇଥାଏ ।

ଦଉଡ଼ି ଯୋଗୁଁ ହାତୀଙ୍କର ବେକ ଓ ଗୋଡ଼ରେ କ୍ଷତ ହେବା ସାଧାରଣ କଥା । ହାତୀଟିକୁ ଧରାଯିବା ପରେ ଏଥିପ୍ରତି ଦୃଷ୍ଟି ଦିଆଯିବା ଉଚିତ ଯେ, ଏହି ଆଘାତପ୍ରାପ୍ତ ଜାଗାଗୁଡ଼ିକ ଯେପରି ଦଉଡ଼ିରୁ ମୁକ୍ତ ରହେ ।

ସବୁବେଳେ ଦୃଷ୍ଟି ରଖାଯିବା ଦରକାର ଯେପରି ହାତୀଟି କେବେ ପଡ଼ି ନ ଯାଏ । ତା'ର କହୁଣି ଖଣ୍ଡିଆ ହୋଇ ପଚି ଯାଇପାରେ ବା ତା' ଦାନ୍ତ ଭାଙ୍ଗିଯାଇପାରେ ଓ ମାଡ଼ି ବା ଶୁଣ୍ଢରେ ବିପଦଜନକ କ୍ଷତ କରିପାରେ । ବେଳେ ବେଳେ ବେକର ଦଉଡ଼ି ଘଷି ହୋଇ ସେହି ଜାଗାରେ ଗଭୀର କ୍ଷତ କରିଦେଇଥାଏ । ହାତୀଙ୍କ ଗୋଡ଼ ବା ପାଦର କ୍ଷତ ପଚିଗଲେ ଜାଗାଟି ଏତେ ଦୁର୍ଗନ୍ଧ ହୁଏ ଯେ ସେହି ଜାଗାରେ ରହି ହୁଏ ନାହିଁ । ସେହି ଖୋଲା କ୍ଷତଟିରେ ମାଛି ବସି ଅଣ୍ଡା ଦେଇଦିଅନ୍ତି ଓ ପଶୁଟିର ଅବସ୍ଥା ଦିନକୁ ଦିନ ଖରାପ ହୋଇଚାଲେ । ସେ ଏପରିକି ତଳେ ବି ପଡ଼ିକରି ରହିପାରେ ନାହିଁ; ଶୋଇ ବି ପାରେ ନାହିଁ । ଯେତେବେଳେ ହାତୀଟିର ପଚମାନ ଲକ୍ଷଣ ସବୁ ପ୍ରକାଶ ପାଏ, ସବୁଠୁ ଭଲ ଉପାୟ ହେଉଛି ତାକୁ ତା' ଇଚ୍ଛା ଅନୁସାରେ ଛାଡ଼ିଦେବା ।

ପୋଷା ହାତୀମାନେ ଯେତେବେଳେ ବଣୁଆ ହାତୀଙ୍କ ସହ ଲଢ଼େଇ କରନ୍ତି, ଏଥିରେ ସେମାନେ ବେଳେ ବେଳେ ଗୁରୁତର ଆଘାତ ପାଇଥାନ୍ତି । ଦାନ୍ତ ଦ୍ୱାରା ସୃଷ୍ଟି ହୋଇଥିବା କ୍ଷତଗୁଡ଼ିକ ଏତେ ଗଭୀର ହୋଇଥାଏ ଯେ, ଜଣେ ତା' ଭିତରେ ନିଜର ପୂରା ହାତଟି ପୂରାଇ ଦେଇପାରିବ । ଏହି କ୍ଷତ ଠିକ୍ ସମୟରେ ଶୁଖିଗଲେ ବି ହାତୀଟି ଆଉ ପୂର୍ବପରି କାମ କରିପାରେ ନାହିଁ । ସେ କେବଳ ହାଲୁକା କାମ ହିଁ କରିପାରିଥାଏ ।

ଗୁରୁତର ଭାବେ ଅସୁସ୍ଥ ହାତୀମାନେ ପଡ଼ି ରହି ନଥାନ୍ତି, କିନ୍ତୁ ଶେଷ ଅବସ୍ଥା ଯାଏଁ

Digitized by srujanika@gmail.com

ସେମାନେ ଖାଦ୍ୟ ଛାଡ଼ି ନଥାନ୍ତି । ଏହା ତାଙ୍କୁ ଶକ୍ତି ଯୋଗାଇଦିଏ । ମଜାର କଥା ହେଉଛି ଏହି ଅବସ୍ଥାରେ ସେମାନେ ବନ୍ଦୀ ଅବସ୍ଥାରୁ ଖସି ପଳାଇବାକୁ ଚାହିଁ ନଥାନ୍ତି ।

ଯେତେବେଳେ କୌଣସି ହାତୀର କ୍ଷତ ଅତି ସାଂଘାତିକ ମନେ ହୁଏ ବା ଅତିରିକ୍ତ ତାଲିମ ଖଟଣି ଯୋଗୁଁ କୌଣସି ହାତୀ ଯଦି ପୂରା ଥକି ଯାଇଥାଏ ବା ବାଗି ହେଉ ନଥିବା କୌଣସି ରୋଗ ବା ସମସ୍ୟାରେ ସେ ପଡ଼ିଥାଏ, ତେବେ କେତେକ କ୍ଷେତ୍ରରେ ପାଖ ଜଙ୍ଗଲରେ ଖୋଲା ଛଡ଼ାଯାଏ । ଏଥିରେ ଅବଶ୍ୟ ହାତୀ ପାଳକଙ୍କର ବିଶେଷ କ୍ଷତି ହୋଇଥାଏ ।

ହାତୀଟିଏ ହାତୀଶାଳ ବା ଶିବିର ଭିତରେ ମରିବାକୁ ଅଶୁଭ ବୋଲି ଧରାଯାଇଥାଏ । ଏହାଛଡ଼ା ହାତୀଟିଏ ମରିଗଲେ ଏହାର ବିଶାଳକାୟ ଶବକୁ ବାହାର କରିବା ବି କ'ଣ ସହଜ କାମ ।

ଗୋଟିଏ ହାତୀର କ୍ଷତର ଚିକିତ୍ସା କରିବା ବି ଅତି କଷ୍ଟକର କାମ ଅଟେ । ଏଥିପାଇଁ ଗୋଟିଏ ଲମ୍ବା ବାଉଁଶ ଅଗରେ ତୁଳାଟିଏ ବାନ୍ଧି ଏହାକୁ କ୍ଷତ ଔଷଧରେ ବୁଡ଼ାଯାଏ ଓ ଏହାକୁ ନେଇ ହାତୀର କ୍ଷତ ଉପରେ ଲଗାଯାଏ । ଏହି କାମ ସମୟରେ ହାତୀଠାରୁ ଯଥେଷ୍ଟ ଦୂରତା ରଖାଯାଇଥାଏ । ଏହି ସମୟରେ ଆଉ ଜଣେ ଲୋକ ହାତୀର ଲକ୍ଷ୍ୟ ଅନ୍ୟଆଡ଼କୁ ରଖିବା ପାଇଁ ତା'କୁ ଆଖୁ ଯୋଗାଇ ଦେଉଥାଏ । କ୍ଷତ ଜାଗାଟିକୁ ଛୁଆଁଇବା ମାତ୍ରେ ହାତୀ କାନଫଟା ଚିତ୍କାର କରିଥାଏ । କ୍ଷତଟି ଶୁଣ୍ଢ ଉପରେ ଥିଲେ, ଏହାର ଚିକିତ୍ସା ଆହୁରି କାଠିକର ହୋଇଥାଏ । କାରଣ ଏହି କ୍ଷତରେ ଔଷଧ ଲଗାଇବା ପାଇଁ ବାଉଁଶଟି ତା' ଆଡ଼କୁ ବଢ଼ାଯିବା କ୍ଷଣି ସେ ଏହାକୁ ଶୁଣ୍ଢରେ ଧରିନିଏ ଓ ଖଣ୍ଡ ଖଣ୍ଡ କରି ଭାଙ୍ଗିଦିଏ । ଏଥିଯୋଗୁଁ ହାତୀର ଶୁଣ୍ଢରେ କ୍ଷତ ହୋଇଥିଲେ ଏହା ଶୁଖିବା ପାଇଁ ଅନେକ ଦିନ ଲାଗିଯାଇଥାଏ ।

## ହାତୀ ରୋଗ ସମ୍ପର୍କରେ ପୁସ୍ତକ

ପ୍ରାଚୀନ ଭାରତରେ ହାତୀଙ୍କ ରୋଗର ଅନୁଧ୍ୟାନ ପାଇଁ ଯଥେଷ୍ଟ ଅଧିକ ଧ୍ୟାନ ଦିଆଯାଉଥିଲା । ଏହି ସବୁ ଅଧ୍ୟୟନର ସିଦ୍ଧାନ୍ତ ସଙ୍କଳିତ ହୋଇ ଗଜାୟୁର୍ବେଦ ନାମରେ ଜଣାଅଛି । ଏହା ହେଉଛି, ହାତୀଙ୍କ ରୋଗର ଚିକିତ୍ସା ବିଜ୍ଞାନ । ଆସାମରେ ଯେହେତୁ ସବୁଠୁ ବେଶି ସଂଖ୍ୟକ ହାତୀ ରହି ଆସିଛନ୍ତି, ତେଣୁ ଏହିଠାରେ ହିଁ ହାତୀଙ୍କ ଚିକିତ୍ସା ଶାସ୍ତ୍ରର ଆରମ୍ଭ ହୋଇଥିଲା । ହାତୀଙ୍କ ସମ୍ପର୍କରେ ଶହ ଶହ ବର୍ଷ ଧରି ପ୍ରଚଳିତ ରହିଥିବା ବିବିଧ ଲୋକକଥା, ତଥା କାହାଣୀକୁ ପ୍ରଥମେ ସଙ୍କଳନ କରିଥିଲେ ପଲକାପ୍ୟ ନାମକ ଜଣେ ଋଷି ଯେକି ଦଶମ ଶତାବ୍ଦୀରେ ଯଥେଷ୍ଟ ନାଁ କରିଥିଲେ, ଏହି ଲେଖକଙ୍କର ତଥ୍ୟଗୁଡ଼ିକ ସଂସ୍କୃତ ଭାଷାରେ ଲିପିବଦ୍ଧ ହୋଇଥିଲା ।

ପୁରାଣ କହେ ଯେ, ଋଷି ପଲକାପ୍ୟ ଗୋଟିଏ ମାଈ ହାତୀର ଗର୍ଭରୁ ଜନ୍ମ ନେଇଥିଲେ । ସେ ଗୋଟିଏ ବଣୁଆ ହାତୀ ପଲରେ ବଢ଼ିଥିଲେ । ହାତୀମାନେ ଯାହା ଖାଉଥିଲେ ସେ ବି ସେଇଆ ଖାଉଥିଲେ । ଏହି ସମୟରେ ନିଖୁଣ ଅବଲୋକନ ଓ ଅଭିଜ୍ଞତାରୁ ସେ ହାତୀଙ୍କର ବିଭିନ୍ନ ରୋଗର ଚିକିତ୍ସା ବିଷୟରେ ଜଣେ ବିଶେଷଜ୍ଞ ବନିଗଲେ । କିଛି କାଳ ପରେ ସେ ଲୋହିତ୍ୟ ନଦୀ କୂଳରେ ବସତି ସ୍ଥାପନ କଲେ । ସେଠାରେ ସେ ହାତୀଙ୍କ ବିଭିନ୍ନ ଶ୍ରେଣୀ ଓ ତାଙ୍କର ବିଭିନ୍ନ ରୋଗର

Digitized by srujanika@gmail.com

ଚିକିତ୍ସା ସମ୍ପର୍କରେ ବିଭିନ୍ନ ଗ୍ରନ୍ଥ ରଚନା କରିଥିଲେ, ଯାହାକି ପରେ *ହସ୍ତ୍ୟାୟୁର୍ବେଦ* ନାମରେ ପରିଚିତ ହୋଇଥିଲା । ବ୍ରହ୍ମପୁତ୍ର ଉପତ୍ୟକାରେ ଏହି ଲୋହିତ୍ୟ ନଦୀଟି ବହୁଛି । ଅନେକେ ଏହାକୁ ହିଁ ପ୍ରକୃତ ବ୍ରହ୍ମପୁତ୍ର ବୋଲି ଭୁଲରେ ଧରିନେଇଥାନ୍ତି ।

ତାଞ୍ଜାଭୁର୍ (ତାଞ୍ଜୋର୍)ର ଚୋଳ ରାଜାମାନେ ବି ହାତୀଙ୍କ ବିଭିନ୍ନ ରୋଗ ବିଷୟରେ ଅଧ୍ୟୟନ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ ଓ ଏହି ବିଷୟରେ ଅନେକ ଗ୍ରନ୍ଥ ପ୍ରକାଶ କରିଥିଲେ । ଉତ୍ତର ଭାରତରେ ଲୋକେ ଚତୁର୍ଥ ଶତକ ଶେଷ ହେବା ପୂର୍ବରୁ ହାତୀଙ୍କ ରୋଗର ଚିକିତ୍ସା ପ୍ରତି ଧ୍ୟାନ ଦେଇଥିଲେ । ଆୟୁର୍ବେଦିକ ଔଷଧର ଜନକ, ଚରକ ମଲମ ମାଧ୍ୟମରେ ହାତୀଙ୍କର କେତୋଟି ରୋଗର ଚିକିତ୍ସା ପଦ୍ଧତି ବାହାର କରିଥିଲେ ।

କୁହାଯାଏ ଯେ, ମାଲାବାରରେ ଅସୁସ୍ଥ ହାତୀମାନଙ୍କୁ କେତେକ କ୍ଷେତ୍ରରେ ଛେଳି, ମେଣ୍ଢା ଓ କୁକୁଡ଼ା ମାଂସ ବି ଦିଆଯାଏ ।

ମଧ୍ୟ ଯୁଗରେ, ମୋଗଲ ସମ୍ରାଟମାନେ ହାତୀଙ୍କୁ ପାଳିବା ଓ ତାଲିମ ଦେବା ପ୍ରତି ସବୁଠୁ ବେଶି ଧ୍ୟାନ ଦେଇଥିଲେ । ଏପରିକି ଆଜି ବି ମୋଗଲମାନଙ୍କ ବଂଶଧରମାନଙ୍କ ଠାରେ ହିଁ ହାତୀଙ୍କ ବିଷୟରେ ସବୁଠୁ ଭଲ ମାନର ଲୋକକଥା ସବୁ ଶୁଣିବାକୁ ମିଳେ । ଏ ଦିଗରେ ସବୁଠୁ ବିଖ୍ୟାତ ହେଉଛନ୍ତି ହବିବ୍ । ହାତୀଙ୍କ ରୋଗ ବିଷୟରେ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ଲେଖାଥିବା ସବୁ ତଥ୍ୟକୁ ପଢ଼ାପଢ଼ି କଲେ । ଏହାପରେ ଏଥିସହ ନିଜର ଅନୁଭୂତି ଓ ଅଭିଜ୍ଞତାକୁ ମିଶାଇ ସେ ଅତି ସରଳ ଭାଷାରେ ଏଗୁଡ଼ିକୁ କାବ୍ୟ ରୂପରେ ଲେଖିଲେ । ଏହି ଲେଖାଗୁଡ଼ିକ ଏବେ ଚାରିଆଡ଼େ ପ୍ରଚଳିତ ହେଉଛି । ବିଭିନ୍ନ ଜାଗାରେ ହାତୀ ପାଳକମାନେ ତାଙ୍କ ହାତୀଙ୍କର ବିଭିନ୍ନ ଶାରୀରିକ ଅସୁସ୍ଥତାକୁ ସେମାନେ *ହବିବ୍-ଚୌପାଇ*ରେ ଦର୍ଶାଯାଇଥିବା ଅନୁସାରେ ବିଭିନ୍ନ ଗଛ ଲତା ଓ ଖଣିଜ ପଦାର୍ଥ ବ୍ୟବହାର କରି ଚିକିତ୍ସା କରିଥାନ୍ତି ।

ହାତୀପାଳକଙ୍କ ପାଖରେ ଏ ବିଷୟରେ କେତେକ ହିନ୍ଦୀ ବହି ବି ଦେଖିବାକୁ ମିଳିଥାଏ । ଏ ଭିତରୁ ଅଧିକାଂଶକୁ ସରଳ ଭାଷାରେ ଲେଖାଯାଇଛି ଓ କେତେକରେ ସୁସ୍ଥ ଓ ରୋଗ ସମୟର ହାତୀଙ୍କର ବିଭିନ୍ନ ଚିତ୍ର ଦିଆଯାଇଛି । ଗତ କିଛି ବର୍ଷ ହେଲା ଏ ବିଷୟରେ ବିଶେଷ ଅଧିକ ଅଧ୍ୟୟନ ହୋଇନାହିଁ । ସେହି ଏକା ପୁସ୍ତକଗୁଡ଼ିକ ହିଁ ବଂଶ ପରେ ବଂଶ ହୋଇ ହାତକୁ ହାତ ଚାଲିଛି ଓ ଅତି ସ୍ୱାର୍ଥପର ଭାବେ ଏହାକୁ କେତେକ ବଂଶ ଭିତରେ ହିଁ ସୀମିତ କରି ରଖାଯାଇଛି । ଯଥେଷ୍ଟ ଯତ୍ନର ସହ ମାହୁନ୍ତମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ଓ ସେମାନଙ୍କ ବିଶ୍ୱାସଭାଜନ ହୋଇ ମୁଁ କେତେକ ପ୍ରାଚୀନ ଗ୍ରନ୍ଥକୁ ଦେଖିପାରିଛି । ମୋର ବିଶ୍ୱାସ, ଏଥିରେ ସାଇତା ରହିଥିବା ଅମୂଲ୍ୟ ତଥ୍ୟଗୁଡ଼ିକୁ ସାଇତି ରଖିବାକୁ ହେଲେ, ଏ ଦିଗରେ କାମ କରୁଥିବା କର୍ମକର୍ତ୍ତାମାନେ ଯଥାଶୀଘ୍ର ଏଗୁଡ଼ିକର ପୁନଃ ପ୍ରକାଶ ଦିଗରେ ବିହିତ ପଦକ୍ଷେପ ନେବା ଜରୁରୀ ଅଟେ ।

ଏପରି ଗୋଟିଏ ଗ୍ରନ୍ଥ ଲେଖାଥିଲା :

"ଆଜି ଗୁରୁ ପଞ୍ଚମୀ, *କାର୍ତ୍ତିକ ସୁଦି, ସମ୍ବତ* 1720 । ଆଜିର ଦିନରେ ଏହି ବହିଟିର ଲେଖା କାର୍ଯ୍ୟ ସମାପ୍ତ ହେଲା ।"

Digitized by srujanika@gmail.com

## ଦାନ୍ତ ରୋଗ

ଦାନ୍ତ ରୋଗାକ୍ରାନ୍ତ ହେଲେ, ହାତୀମାନେ ନିଜେ ଏହାକୁ ଭାଙ୍ଗି ଦେବାକୁ ବାଧ୍ୟ ହୁଅନ୍ତି । ଏକଦା ଆର୍.ସି.ମୋରିସ୍ ଗୋଟିଏ ଗଛର ଦୁଇଟି ଡାଳ ମଝିରେ 45.7 ସେ.ମି. ଲମ୍ବର ଏକ ଲମ୍ବା ହାତୀ ଦାନ୍ତ ଭାଙ୍ଗି ରହିଥିବାର ଦେଖିବାକୁ ପାଇଥିଲେ । ମୋରିସ୍ ଦେଖିଲେ ଏହି ଦାନ୍ତରେ ଗୋଟିଏ କଣା ହୋଇଯାଇଥିଲା । ଏହାର ବିନ୍ଧାରୁ ରକ୍ଷା ପାଇବା ପାଇଁ ହାତୀଟି ତା'ର ଦାନ୍ତକୁ ଭାଙ୍ଗି ଦେଇଥିଲା । ସେ ପ୍ରଥମେ ପଥର ଫାଟରେ ଦାନ୍ତକୁ ପୂରାଇ ଏହା କରିବାକୁ ଚେଷ୍ଟା କରିଥିଲା । ସେଠାରେ ସଫଳ ହୋଇ ନପାରିବାରୁ ସେ ଦାନ୍ତଟିକୁ ଦୁଇ ଡାଳର ମଝିରେ ରଖିଲା । ଏହା କୋଣୁଆ ହୋଇ ରହିଲା, ଏହି ଅବସ୍ଥାରେ ସେ ଦାନ୍ତଟିକୁ ଭିଡ଼ିଦେଲା । ହାତୀ ହାତୀ ମଧ୍ୟରେ ଲଢ଼େଇ ସମୟରେ ବି ଦାନ୍ତ ଭାଙ୍ଗିଯାଇଥାଏ ।

## ହାତୀଙ୍କ ଆୟୁଷ

ହାତୀ ଏକ ଦୀର୍ଘଜୀବୀ ପଶୁ ରୂପେ ଜଣାଶୁଣା ଅଟେ । ପ୍ରାଚୀନ ଭାରତରେ ଲୋକମାନେ ବିଶ୍ୱାସ କରୁଥିଲେ ଯେ, ହାତୀମାନେ 300 ବର୍ଷ ଜୀଇଁଥାନ୍ତି । ଏବେ ବି କିଛି ଲୋକ ବିଶ୍ୱାସ କରୁଛନ୍ତି ଯେ ହାତୀମାନେ 150ରୁ 200 ବର୍ଷ ଜୀଅନ୍ତି । ମୋଗଲମାନେ ବିଶ୍ୱାସ କରୁଥିଲେ ଯେ ହାତୀଙ୍କ ଆୟୁଷ 120 ବର୍ଷ । ସାଣ୍ଡେରସନ୍‌ଙ୍କ ମତ ଅନୁସାରେ ବଣୁଆ ହାତୀମାନେ 150 ବର୍ଷ ଯାଏଁ ବଞ୍ଚିପାରନ୍ତି । କିନ୍ତୁ ଫ୍ଲାଓ୍ୱର୍ସ ଜଣାଇଛନ୍ତି ଯେ ହାତୀଟି ଠିକ୍ ମଣିଷ ପରି ପ୍ରାୟ 75 ବର୍ଷ ବଞ୍ଚିଥାଏ । ଅନେକ ପୋଷାହାତୀଙ୍କ ଜୀବନଧାରାକୁ ଅନୁଧ୍ୟାନ କରି ସେ ଏହି ହିସାବଟି ବାହାର କରିଥିଲେ । ବାଲ୍ମୀକିଙ୍କ ସମୟରେ ବିଶ୍ୱାସ କରାଯାଉଥିଲା ଯେ ଗୋଟିଏ ହାତୀ 60 ବର୍ଷ ବୟସ ବେଳକୁ ସବୁଠୁ ବେଶି ହୃଷ୍ଟପୁଷ୍ଟ ହୋଇଥାନ୍ତି । ଏହି ବୟସର ହାତୀମାନଙ୍କର ମୂଲ୍ୟ ସବୁଠୁ ବେଶି ହେଉଥିଲା । ସେହି ସମୟରେ ଷାଠିଏ ବର୍ଷ ବୟସ୍କ ହାତୀଙ୍କ ବିଶାଳ ଦାନ୍ତଗୁଡ଼ିକ ଉପର ଆଡ଼କୁ ବଙ୍କେଇ ରହିଥିଲେ ଓ ବେକରେ ବଡ଼ ବଡ଼ ଘଣ୍ଟି ଝୁଲୁଥିଲା ସେମାନେ ରାଜପଥରେ ଯିବା ସମୟରେ ଏହା ବିଶେଷ ଆକର୍ଷଣୀୟ ଦୃଶ୍ୟ ହେଉଥିଲା ।

ହାତୀମାନେ କେତେ ବର୍ଷ ବଞ୍ଚନ୍ତି ଏ ସମ୍ପର୍କରେ ଏକ ଉଦାହରଣ ହେଉଛି ହାତୀ 'ହର୍‌ତାଲା', ଡଚ୍ ଲୋକମାନେ ଶ୍ରୀଲଙ୍କାରେ ଶାସନ କରୁଥିବା ସମୟରେ 140 ବର୍ଷ ଧରି ଏହି ହାତୀଟି କାମ କରିଥିଲା । ସେ ମଲା ବେଳକୁ ତା' ବୟସ 170 ବର୍ଷ ହୋଇଥିଲା ବୋଲି ବିଶ୍ୱାସ କରାଯାଇଥିଲା । ବିଂଶ ଶତାବ୍ଦୀର ଆରମ୍ଭ ସମୟରେ ରାଜକୁମାରୀ ଏଲିସ୍ ନାମକ ମାଈ ହାତୀଟିଏ ଇଂଲଣ୍ଡର ଏକ ସର୍କସ୍ ଦଳରେ ଅଷ୍ଟ୍ରେଲିଆ ଯାଇଥିଲା । ସେ 152 ବର୍ଷ ବୟସରେ ମରିଥିଲା । ବେଟିଆ ରାଜ୍ୟର ଇମାନ୍ ପ୍ୟାରୀ ନାମକ ଆଉ ଏକ ମାଈ ହାତୀ ମଲାବେଳକୁ ତା' ବୟସ ହୋଇଥିଲା ୨୨ ବର୍ଷ । ପୋଷା ହାତୀମାନେ ହାରାହାରି ୫0 ବର୍ଷ ଯାଏଁ ବଞ୍ଚିଥାଆନ୍ତି । ବଣୁଆ ହାତୀମାନେ ଏମାନଙ୍କ ଅପେକ୍ଷା ଅଧିକ ବର୍ଷ ବଞ୍ଚିଥିବାର ଆଶା କରାଯାଇପାରେ । ଏହା ପ୍ରାୟ 100 ବର୍ଷ ହୋଇପାରେ । 35ରୁ 45 ବର୍ଷ ବୟସର ହୋଇଥିଲାବେଳେ ହାତୀଟିଏ ତା'ର ସବୁଠୁ ହୃଷ୍ଟପୁଷ୍ଟ ଅବସ୍ଥାରେ ପହଞ୍ଚିଥାଏ ।

Digitized by srujanika@gmail.com

ଆଉ କେତେଗୁଡ଼ିଏ ବିଷୟ ହାତୀଙ୍କ ଆୟୁଷକୁ ପ୍ରଭାବିତ କରିଥାଏ । ଅତିରିକ୍ତ ଶାରୀରିକ ପରିଶ୍ରମ ଯୋଗୁଁ ପୋଷା ହାତୀମାନେ ଶୀଘ୍ର ମରିବାକୁ ବାଧ ହୋଇଥାଆନ୍ତି । ଏହାଛଡ଼ା, ତାଙ୍କୁ ଯଦି ଯଥେଷ୍ଟ କାମ ଦିଆ ନଯାଏ, ତେବେ ବି ସେମାନେ ମାନ୍ଦା ହୋଇଯାଆନ୍ତି ଓ ଫଳରେ ତାଙ୍କ ସ୍ୱାସ୍ଥ୍ୟ ଖରାପ ହୋଇଚାଲେ । ବଣୁଆ ହାତୀମାନେ ବଣରେ ଆବଶ୍ୟକୀୟ ପରିମାଣର ଶାରୀରିକ ପରିଶ୍ରମ କରିଥାଆନ୍ତି ।

ଏହାଛଡ଼ା ବନ୍ଦୀ ଅବସ୍ଥାରେ, ସେମାନେ ଜଙ୍ଗଲରେ ମିଳୁଥିବା ପରି ବିଭିନ୍ନ ରକମର ଖାଦ୍ୟ ଖାଇବାକୁ ପାଇ ନଥାନ୍ତି । ସେମାନଙ୍କୁ ମନଖୁସିରେ ଗାଧୋଇବା ପାଇଁ ଓ ମନଇଚ୍ଛା ମୁକ୍ତ ଭାବରେ ଖେଳିବା ପାଇଁ ସଫା ଝରକା ବା ପୋଖରୀର ସୁଯୋଗ ମିଳି ନଥାଏ । ବଣୁଆ ଦନ୍ତା ହାତୀଟିଏ ଜଙ୍ଗଲରେ ବୁଲୁଥିଲା ବେଳେ ତାକୁ ଦେଖିବାରେ ଖୁବ୍ ଆନନ୍ଦ ମିଳିଥାଏ । ସେ ସ୍ୱାସ୍ଥ୍ୟ, ଶକ୍ତି ଓ ସୌନ୍ଦର୍ଯ୍ୟର ଏକ ପ୍ରତୀକ ପରି ମନେହୁଏ । ମାଈ ହାତୀଗୁଡ଼ିକ ବି ହୃଷ୍ଟପୁଷ୍ଟ ଓ ସୁନ୍ଦର ଦେଖାଯାଆନ୍ତି । କିନ୍ତୁ ବନ୍ଦୀ ଅବସ୍ଥାରେ ଏ ସବୁ ଦେଖିବାକୁ ମିଳି ନଥାଏ । ଏହା ଛଡ଼ା ଜଙ୍ଗଲରେ କେବଳ ମଣିଷର ଉପସ୍ଥିତିକୁ ଛାଡ଼ିଦେଲେ ସେମାନଙ୍କର ଆଉ କାହାକୁ ଡରିବାର ନଥାଏ ।

## ବୟସ ନିରୂପଣ

ଜଣେ ଅସଲି ହାତୀପାଳକ ଯତ୍ନର ସହିତ ଗୋଟିଏ ହାତୀର ବୃଦ୍ଧିକୁ ତା'ର ଜନ୍ମଠାରୁ ବିଭିନ୍ନ ବୟସ ଯାଏଁ ଲକ୍ଷ୍ୟ କରିଥାନ୍ତି । ତେଣୁ ସେ କୌଣସି ହାତୀକୁ ଦେଖି କରି ତା'ର ବୟସ କେତେ ତାହା ପ୍ରାୟ ଭଣା ଅଧିକେ ସଠିକ୍ କହିଦେଇ ପାରିବେ । ଛୁଆଗୁଡ଼ିକ ବଢୁଥିବା ସମୟରେ ସେ ଏମାନଙ୍କ ବୟସକୁ ପୂରା ସଠିକ୍ ଭାବେ କହିଦେଇପାରିବେ । ହାତୀଟିଏ ପ୍ରାୟ 25 ବର୍ଷ ଯାଏଁ ଲଗାତାର ବଢ଼ି ଚାଲିଥାଏ । ସେ ସେହି ବୟସରେ ପହଞ୍ଚିବା ପୂର୍ବରୁ ତା'ର ଉଚ୍ଚତାକୁ ଦେଖି ତା'ର ବୟସକୁ ଅନୁମାନ କରାଯାଇପାରେ । ଦେହର ଉଚ୍ଚତା ବଢ଼ିବା ବନ୍ଦ ହୋଇଯିବା ପରେ ଗୋଟିଏ ହାତୀର ଉଚ୍ଚତାକୁ ଦେଖି ତା'ର ବୟସକୁ ସଠିକ୍ ଭାବରେ ଜାଣି ହୁଏ ନାହିଁ । ଗୋଟିଏ ବୟସ୍କ ହାତୀର ବୟସ ଅନୁମାନ କରିବା ପାଇଁ ଏହାର ତଳ ସୂଚିତ ଦିଗଗୁଡ଼ିକୁ ମନରେ ରଖିବାକୁ ପଡ଼ିଥାଏ :

- ତା'ର ଗାଲଟି ଚଟକା ନା ଫମ୍ପା ?
- ତା' କାନର ଉପରଭାଗ ସିଧା ଅଛି ନା ଓହଳି ପଡ଼ିଛି ?
- କାନର ତଳ ଭାଗଟି କେତେ ନରମ ?
- ମୁହଁଟି କେତେ ପରିମାଣରେ ବିବର୍ଣ୍ଣ ହୋଇଛି ?
- ଶୁଣ୍ଢର ମୂଳର ଅବସ୍ଥା ?
- ଶୁଣ୍ଢ ଓ ଗୋଡ଼ଗୁଡ଼ିକ କେତେ ଛୋଟ ?
- ଲାଞ୍ଜର ମୂଳର ଉଭୟ ପାଖ କେତେ ପରିମାଣରେ ଖାଲୁଆ ?
- ହାତୀଟିର ଗତିଭଙ୍ଗୀ ।
- ମଳର ଅବସ୍ଥା । ଗୋଟିଏ ଅତିରିକ୍ତ ବୟସ୍କ ହାତୀର ମଳରେ ହଜମ ହୋଇ ନଥିବା ଅନେକ ଖାଦ୍ୟ ରହିଥାଏ ।

Digitized by srujanika@gmail.com

- ଦାନ୍ତର ଅବସ୍ଥା । ଏଥିରୁ ହାତୀର ବୟସ ସମ୍ପର୍କରେ ଅନେକ ସୂଚନା ମିଳିପାରିଥାଏ ।
- ଦେହର ମୋଟାମୋଟି ଆକୃତି ।

ଏହି ସଙ୍କେତଗୁଡ଼ିକୁ ଗୋଟି ଗୋଟି କରି ଓ ମୋଟାମୋଟି ଭାବରେ ମନରେ ରଖି ଅଭିଜ୍ଞ ବ୍ୟକ୍ତି ଜଣକ ନିଜେ ଆଗରୁ ଦେଖିଥିବା ବିଭିନ୍ନ ବୟସର ହାତୀଙ୍କ ସହ ମେଳାଇ ଦେଖନ୍ତି ଓ ହାତୀଟିର ବୟସକୁ ଅନୁମାନ କରିଥାନ୍ତି । ହାତୀଙ୍କର ବୟସକୁ ଯାଞ୍ଚ କରିବା ପାଇଁ ତାଙ୍କର କୌଣସି ଜନ୍ମ ପ୍ରମାଣପତ୍ର ନଥାଏ ।

ଆଗରୁ କୁହାଯାଇ ସାରିଛି ଯେ, କୌଣସି ବଢ଼ିଲା ହାତୀର ବୟସ ପରି ଗୋଟିଏ ବୟସ୍କ ହାତୀର ବୟସକୁ ସଠିକ ଭାବରେ ଅନୁମାନ କରିହୁଏନାହିଁ । ଅଧିକାଂଶ ହାତୀ ପାଳକ ହାତୀଙ୍କୁ ନିରେଖି ଦେଖି ସେମାନଙ୍କ ବୟସକୁ ମୋଟାମୋଟି ଭାବେ ଅନୁମାନ କରିଥାଆନ୍ତି ।

## ଶେଷ ବିଶ୍ରାମ ସ୍ଥଳ

ବଣୁଆ ଆଦିବାସୀଙ୍କ ମଧ୍ୟରେ ଏବେ ବି ଗୋଟିଏ ବିଶ୍ୱାସ ପ୍ରଚଳିତ ଅଛି ଯେ, ହାତୀମାନେ ମରିବା ବେଳକୁ ଏକ ଦୂର ଜାଗାକୁ ଚାଲିଯାଇଥାଆନ୍ତି । ଯେହେତୁ ମଲା ହାତୀଙ୍କର କଙ୍କାଳ ସାଧାରଣତଃ ଦେଖିବାକୁ ମିଳି ନଥାଏ, ତେଣୁ ସେମାନଙ୍କ ମରିବା ଜାଗାକୁ ନେଇ ଏପରି ମଉଳିଆ କଳ୍ପନା ସବୁ ଗଢ଼ିଉଠିଛି ।

*ଓ୍ୱାଇଲ୍ଡ୍ ଏଲିଫାଣ୍ଟ୍* ନାମକ ନିଜର ବହିରେ, ସାର୍ ଏମେର୍ସନ୍ ଟେନାଣ୍ଟ ଶ୍ରୀଲଙ୍କାର ଆଦିବାସୀଙ୍କ ମଧ୍ୟରେ ପ୍ରଚଳିତ ଥିବା ଗୋଟିଏ ବିଶ୍ୱାସ ସମ୍ପର୍କରେ ଲେଖିଛନ୍ତି । ସେମାନେ ଭାବନ୍ତି, ଆଦାମ୍‌ଙ୍କ ଶୃଙ୍ଗର ପୂର୍ବ ଦିଗରେ ଗୋଟିଏ ଉପତ୍ୟକାରେ ହାତୀମାନଙ୍କର ମଶାଣି ରହିଛି । ମରିବା ସମୟ ଆସିଗଲେ, ହାତୀମାନେ ପଥରର ଏକ ସରୁଆ ବାଟକୁ ଟପି ସେଠାରେ ଯାଇ ପହଞ୍ଚିଯାଆନ୍ତି । ଭାରତର କର୍ଣ୍ଣାଟକର କୁରବାମାନେ ବି ବିଶ୍ୱାସ କରନ୍ତି ଯେ, ଗୋଟିଏ ସାମୂହିକ ମଶାଣିରେ ହିଁ ହାତୀମାନେ ପ୍ରାଣ ହରାଇଥାନ୍ତି ।

ଓର୍‌ଲିଆନ୍‌ସ୍‌ର ଡ୍ୟୁକ୍ (ଶାସକ) ନିଜର ଦଳବଳକୁ ନେଇ ମଧ୍ୟ ଆଫ୍ରିକାର କେନ୍ଦ୍ର ଭାଗ ଯାଏଁ ଏପରି ଏକ ମଶାଣି ଖୋଜି ଖୋଜି ଚାଲିଥିଲେ । ଜଣେ ବୟସ୍କ ବୋଙ୍ଗୋ ଆଦିବାସୀ ଏହି ଦଳଟିକୁ କହିଥିଲେ ଯେ ଏକଦା ସେ ଏପରି ଏକ ମରମର ହେଉଥିବା ହାତୀ ପଛରେ ପାଞ୍ଚଦିନ କାଳ ଚାଲି ଚାଲି ଏହି ମଶାଣିଟିରେ ପହଞ୍ଚିଥିଲେ, ଯେଉଁଠି ହାତୀଟି ପହଞ୍ଚିବା ପରେ ସେଠାରେ ପହରା ଦେଉଥିବା ପ୍ରହରୀ ହାତୀମାନେ ତାକୁ ଆକ୍ରମଣ କରିଥିଲେ ।

ଗୋଟିଏ ମଜା କଥା ହେଉଛି, ହାତୀମାନେ ସାଧାରଣତଃ ପାଣି ଥିବା ଜାଗା ପାଖରେ ବା ପାଣି ଭିତରେ ବି ମରିବାକୁ ପସନ୍ଦ କରନ୍ତି । ଏହାକୁ ସୂଚାଉଥିବା ଗୋଟିଏ ଉଦାହରଣକୁ ଏଠାରେ ଉଲ୍ଲେଖ କରାଯାଇପାରେ । ଉତ୍ତର ପ୍ରଦେଶର *ତେରାଇ* ଇଲାକାରେ, ଲାଲ୍ ଢାଙ୍ଗଠାରୁ କେତେ କି.ମି. ଦୂରରେ, କେତୋଟି ହାତୀ ଦଳ ଜମିଦାରଙ୍କ ଫସଲ ସବୁ ଖାଇଯାଉଥିଲେ । ଯେତେ ଡବା ବାଡ଼ିଆବାଡ଼ି କଲେ ବି କିଛି କାମ ନ ହେବାରୁ, ଜମିଦାର ବାଧ ହୋଇ ଫାଙ୍କା ଗୁଳି ଚଳାଇଲେ । ଅନ୍ଧାର ହୋଇଥିବାରୁ, ଗୁଳିଟି ଯାଇ ଦଳଟିର ସବୁଠୁ ବଡ଼ ଦନ୍ତା ହାତୀଟିର ମୁହଁରେ

Digitized by srujanika@gmail.com

ବାଜିଲା । ହାତୀଗୁଡ଼ିକ ସେଠାରୁ ଦଉଡ଼ି ପଳାଇଲେ । ସେଠାରୁ ପ୍ରାୟ ଅଧ କିଲୋମିଟର ଦୂରକୁ ପଳାଇଗଲା ପରେ ଗୁଳି ଖାଇଥିବା ହାତୀଟି ଦଳରୁ ଅଲଗା ହୋଇଯାଇ ଗୋଟିଏ ପୋଖରୀ ଭିତରେ ବସିଗଲା । ହାତୀଟିକୁ ଦେଖିବା ପାଇଁ ଜମିଦାରଙ୍କ ଚାକରମାନେ ପ୍ରତିଦିନ ସେଠାକୁ ଯାଉଥାନ୍ତି । ସେ ସେପରି ପୋଖରୀ ଭିତରେ ହିଁ ପଡ଼ିରହିଲା । ଖାଇବା ପାଇଁ ବି ସେ ପାଣି ଭିତରୁ ବାହାରକୁ ଆସିନାହିଁ । ଚାରିଦିନ ପରେ ହାତୀଟି ସେଠାରେ ମରିଗଲା । ପ୍ରାୟ ଚାରି ମାସ ପରେ ବର୍ଷା ଛାଡ଼ିଗଲା ପରେ ମୁଁ ତା'ର କଙ୍କାଳଟିକୁ ଦେଖିଲି । ଏହା ଏକ ଚମତ୍କାର ଦନ୍ତା ହାତୀ ଥିଲା ।

ଜଣେ ମହିଳା ଲେଖକ ଚିଭାଗଞ୍ଜ ନିକଟସ୍ଥ କର୍ଣ୍ଣପୁଲୀ ନଦୀରେ ହାତୀଟିଏ ଜଳରେ ମରିଥିବାର ବର୍ଣ୍ଣନା କରିଛନ୍ତି । ସେ ନିଜ ଭାଇଙ୍କ ସହିତ ଘଟଣାସ୍ଥଳୀଟିରେ ଉପସ୍ଥିତ ଥିଲେ । ଦନ୍ତାହାତୀଟି ତାଙ୍କ ପାଖ ଦେଇ ଚାଲିଗଲା । ସେ ଯେପରି ଭାବରେ ମୁଣ୍ଡ ହଲାଉଥିଲା ସେଥିରୁ ଜଣାପଡୁଥିଲା ଯେ ସେ ବହୁତ କଷ୍ଟ ପାଉଥିଲା । ଚାଲିବା ସମୟରେ ସେ ନିଜର ଅତିଶୟ ଓଜନକୁ ବି ସମ୍ଭାଳି ପାରୁ ନଥିଲା । ବହୁତ କଷ୍ଟରେ ସେ ନଦୀ ପାଖରେ ପହଞ୍ଚିଲା । ତା'ପରେ ସେ ପାଣି ଭିତରକୁ ଗଳି ପଡ଼ିଲା ଓ ଏଥିରେ କେଉଁଠି ହଜିଗଲା ।

1952ରେ ହରିଦ୍ୱାର ନିକଟରେ ଥିବା ଶିବାଲିକ୍ ପର୍ବତ ଶ୍ରେଣୀର ଘାସିରାମ ନୁଲ୍ଲାରେ ମୁଁ ଗୋଟିଏ ହାତୀର କଙ୍କାଳ ଦେଖିଥିଲି । ସାର୍ ଉଇଲିଅମ୍ ଗୋଭର୍ସ୍ ଏକଦା ନୀଳ ନଦୀରେ ଯାତ୍ରା କରୁଥିବା ସମୟରେ ଗୋଟିଏ ଦାନ୍ତବିହୀନ ଦନ୍ତାହାତୀର ଶବକୁ ଆବିଷ୍କାର କରିଥିଲେ । ହାତୀଟି ତିନି ଚାରି ଦିନ ଆଗରୁ ହିଁ ମରିଥିଲା ପରି ମନେ ହେଉଥିଲା । ଗୋଭର୍ସ୍ ମତ ଦେଇଛନ୍ତି ଯେ, ବିଷୁବ ବୃତ୍ତର ପୂର୍ବ ଆଫ୍ରିକା ଅଞ୍ଚଳରେ ହାତୀସବୁ ସନ୍ତସନ୍ତିଆ ଜାଗାରେ ହିଁ ମରିଥାଆନ୍ତି । ଖାର୍ଟୁମ୍‌ରେ ନୀଳନଦୀ ଉପରେ ପୋଲ ତିଆରି କାମ ଚାଲିଥିଲାବେଳେ ନଦୀ କୂଳରେ 6 ମିଟର ତଳେ ଜଳହସ୍ତୀ ଓ ଅନ୍ୟ ପଶୁମାନଙ୍କର ହାଡ଼ସବୁ ଦେଖିବାକୁ ମିଳିଥିଲା । ଏବେ ଏହାକୁ ସମସ୍ତେ ପ୍ରାୟ ମାନି ନେଲେଣି ଯେ ହାତୀମାନେ ମୂଳତଃ ପାଣି ଭିତରେ ବା ପାଣି ପାଖରେ ମରିଥାନ୍ତି ।

ଆସାମ ଖେଦାରେ ଏକ ପରମ୍ପରା ରହିଛି ଯେ ମରିବା ସମୟ ପାଖେଇ ଯାଇଥିବା ହାତୀଙ୍କୁ ଯେଉଁଠି ପାଣିଥିବା ଜାଗାକୁ ନେଇ ନିଆଯାଏ ଓ ସେଠାରେ ଛାଡ଼ିଦିଆଯାଏ । ପାଖରେ କୌଣସି କାଦୁଆ ଭୂମି ଥିଲେ ହାତୀକୁ ସେଠାରେ ରଖାଯାଏ ଓ ପ୍ରତିଦିନ ଶିବିରରୁ ଲୋକ ଯାଇ ତାକୁ ଦେଖିଆସନ୍ତି । ଏପରି କାଦୁଅରେ ଛାଡ଼ି ଦିଆଗଲେ ହାତୀଟି ମରିଯିବା ଯାଏଁ ବା ଭଲ ହୋଇଯିବା ଯାଏଁ ସେହି ଗୋଟିଏ ଜାଗାରେ ହିଁ ପଡ଼ିରହେ । ସେ ମରିଯିବା ପରେ, ଶାଗୁଣା ଓ ବଣର ଅନ୍ୟ ମାଂସାଶୀ ଜୀବମାନେ ତା' ଶବର ମାଂସକୁ ଖାଇଯାଆନ୍ତି । କଙ୍କାଳଟି କାଦୁଅରେ ବୁଡ଼ିଯାଏ ।

1957 ମସିହା ମାର୍ଚ୍ଚ ମାସ 8 ତାରିଖରେ ପାଲ୍‌ଟିଡୁନ୍‌ରେ ଇଡ଼େଇରେ ଗୋଟିଏ ହାତୀ ମରିଗଲା । ଦୁଇଜଣ ଜଙ୍ଗଲୁଆଳୀଙ୍କ ସହିତ, ମୁଁ ହାଡ଼ ଦେଖିବାକୁ ଜାଗାଟିରେ ପହଞ୍ଚିଲି । ଦୁଇ ମାସ ତଳେ ସେହି ଜଙ୍ଗୁଆଳୀମାନେ ହାତୀର ସଢ଼ା ଶବଟିକୁ ଦେଖିଥିଲେ । ଏବେ ସେଠାରେ ଆଉ କିଛି ନଥିଲା । ବୋଧହୁଏ ଜଙ୍ଗଲରେ ମାଂସାଶୀ ଜୀବଗୁଡ଼ିକ ହାତୀଟିର ମାଂସକୁ ଖାଇଦେବା ପରେ ଏହାର ହାଡ଼ଗୁଡ଼ିକୁ ବି ବୋହି ନେଇଥିଲେ ।

Digitized by srujanika@gmail.com

ବାଘ, ଚିତା, ବିଲୁଆ, ଶାଗୁଣା ଓ ବଣର ଅନ୍ୟ ମାଂସାଶୀ ଜୀବମାନଙ୍କର ଏକ ପ୍ରାକୃତିକ ଅଧିକାର ଅଛି ଯେ, ଜଙ୍ଗଲରେ ଯେ କୌଣସି ମଲା ଜୀବକୁ ସେମାନେ ଖାଇ ପାରିବେ । ସେମାନେ ନିଜର ଏହି ଅଧିକାର ସାବ୍ୟସ୍ତ କଲା ପରେ ଜୀବଟିର ବଳକା ଅଂଶ ଏପଟେ ସେପଟେ ଖେଳାଇ ହୋଇଯାଇପାରେ । କିନ୍ତୁ ମଣିଷ ଶିକାରୀମାନେ ବି ଏଗୁଡ଼ିକୁ ଏପଟ ସେପଟ କରି ଦେଇଥାନ୍ତି । ଥରେ ମୁଁ ମିଠିବେରୀର ଜଙ୍ଗଲରେ ଗୋଟିଏ ହାତୀର ହାଡ଼କୁ ଦେଖିଥିଲି । ଏହାକୁ ନେଇ ଗୁରୁକୁଳ କାଙ୍ଗ୍ରୀର ପ୍ରାଣୀ ବିଜ୍ଞାନ ସଂଗ୍ରହାଳୟରେ ମୁଁ ରଖିବାକୁ ଚାହିଁଲି । ଗୁରୁକୁଳର କର୍ମକର୍ତ୍ତାମାନେ ବି ଏଥିରେ ଆଗ୍ରହ ଦେଖାଇଲେ ଓ ଏଥିପାଇଁ ସରକାରଙ୍କ ସହ ଯୋଗାଯୋଗ ଆରମ୍ଭ କରିଦେଲେ । କିଛି ସମୟ ପରେ ଆମକୁ ଅନୁମତି ମିଳିଗଲା । ଆମେ ଗୋଟିଏ ଟ୍ରକ୍ ନେଇ ହାଡ଼ଗୁଡ଼ିକୁ ସଂଗ୍ରହ କରିବାକୁ ସେଠାରେ ପହଞ୍ଚିଲୁ । କିନ୍ତୁ ସେତେବେଳକୁ ହାଡ଼ଗୁଡ଼ିକ ସେଠାରୁ ଉଭେଇ ସାରିଥିଲା । ଅନୁସନ୍ଧାନରୁ ଜଣାପଡ଼ିଲା ଯେ, ଜଣେ ଲୋକ ସବୁତକ ହାଡ଼କୁ ଗଧଙ୍କ ପିଠିରେ ବୋହି ନେଇ ସବୁଠୁ ପାଖରେ ଥିବା ବ୍ୟବସାୟୀକୁ ଏଗୁଡ଼ିକ ବିକିଦେଇଥିଲା ।

## ମଣିଷ ବିରୁଦ୍ଧରେ ହାତୀ

ବଣୁଆ ହାତୀମାନେ ନିଆଁକୁ ଡରିଥାନ୍ତି । ସେମାନେ କୌଣସି ଜାଗାରେ ଚାଷଜମି ଉପରେ ଚଢ଼ାଉ କଲେ, ତାଙ୍କୁ ସେଠାରୁ ତଡ଼ିବା ପାଇଁ ସ୍ଥାନୀୟ ଲୋକମାନେ ନିଆଁ ଜାଳିଥାନ୍ତି ।

ଆଗରୁ ଯେପରି କୁହାଯାଇଛି, ବେଳେ ବେଳେ ହାତୀମାନେ ବଣର ଅନ୍ୟ ଯେ କୌଣସି ଅନ୍ୟ ହିଂସ୍ର ଜୀବଙ୍କ ପରି ଘାତକ ସାଜି ମଣିଷଙ୍କ ଜୀବନ ପ୍ରତି ବିପଦ ସୃଷ୍ଟି କରିପାରନ୍ତି । ସେମାନେ ବିଭିନ୍ନ ପ୍ରକାରେ ଆକ୍ରମଣ କରିଥାନ୍ତି । ସେମାନେ ଲୋକଟିକୁ ନାତ ମାରିପାରନ୍ତି ବା ସେମାନେ ଶୁଣ୍ଢରେ ତାକୁ ଉପରକୁ ଟେକି ଭୂମିରେ ବାଡ଼େଇ ଦେଇପାରନ୍ତି । ସେମାନେ ତାକୁ ପାଦରେ ଦଳି ତା ଖପୁରୀ ଓ ପିଞ୍ଜରାକୁ ଚଟଣି ବନାଇ ଦେଇପାରନ୍ତି । ସେମାନେ ନିଜ ଦାନ୍ତ ବି ବ୍ୟବହାର କରିପାରନ୍ତି ।

କେତେକ ସମୟରେ ଶୁଣାଯାଇଛି ଯେ ହାତୀ ମଣିଷଙ୍କୁ ଦି'ଗଡ଼ କରିଦେଲା । ବିଜୟନଗରର ଗୋଟିଏ ପଥର ଖୋଦେଇ (15ଶ ଶତାବ୍ଦୀ)ରେ ଦେଖାଯାଇଛି, ଗୋଟିଏ ହାତୀ ମଣିଷମାନଙ୍କୁ ଏପରି ମାରୁଛି । ତା'ର ଆଖିପତାଗୁଡିକର ଭଙ୍ଗୀ ଓ ମୁହଁରୁ ବୋହି ଚାଲିଥିବା ଧଳାରଙ୍ଗର ମସ୍ତ ରସରୁ ଜଣା ପଡୁଛି ଯେ ହାତୀଟି ଉତ୍ତେଜିତ ଅବସ୍ଥାରେ ରହିଛି । ପାଞ୍ଚ ଜଣ ଲୋକ ତାକୁ ନିୟନ୍ତ୍ରଣ କରିବା ପାଇଁ ଚେଷ୍ଟା ଚଳାଇଛନ୍ତି । ଏମାନଙ୍କ ମଧ୍ୟରୁ ଜଣକୁ ଦନ୍ତା ହାତୀଟି ଧରି ପକାଇଛି । ସେ ତା ଆଗ ପଟର ବାଁ ଗୋଡ଼ରେ ଲୋକଟିର ଗୋଟିଏ ଗୋଡ଼କୁ ଚାପିଧରିଛି ଓ ଶୁଣ୍ଢରେ ତା'ର ଆର ଗୋଡ଼ଟିକୁ ଗୁଡ଼ାଇ ଧରି ଭିଡୁଛି । ତା'ର ଡାହାଣ ଗୋଡ଼ର ପାଦଟି ଲୋକଟିର ଜଙ୍ଘ-ସନ୍ଧିରେ ରହିଛି । ଗୋଟିଏ ପଛ ଗୋଡ଼ରେ ହାତୀ ଆଉ ଜଣେ ଲୋକକୁ ବି ଧରାପକାଇଛି । ତୃତୀୟ ଲୋକ ଜଣକ ଏହି ଲୋକଟିର ବାଳକୁ ଧରି ଭିଡୁଛି ।

ସିଙ୍ଗାପୁରର ଏକ ସର୍କସ ଦଳର ଗୋଟିଏ ହାତୀ ଥରେ ଚୀନ୍ ଦେଶର ଜଣେ ଛଅ

Digitized by srujanika@gmail.com

ବର୍ଷର ପିଲାକୁ ଚକଟି ମାରିଦେଲା । ପିଲାଟି ଗୋଟିଏ କଦଳୀ ଭିତରେ ଲାଲ ଗୋଲମରିଚ ଗୁଣ୍ଡ ଭର୍ତ୍ତି କରି ହାତୀକୁ ଖୁଆଇ ଦେଇଥିଲା । ହାତୀଟି ଏଥିରେ ଏତେ ଜୋର୍‌ରେ ରାଗିଗଲା ଯେ ସେ ପିଲାଟିକୁ ଶୁଣ୍ଢରେ ଠେଲି ତଳେ ପକାଇଦେଲା ଓ ପାଦରେ ଚକଟି ଦେଇ ପ୍ରାଣରେ ମାରିଦେଲା ।

ଥରେ କାନପୁରର ଜଣେ ଜମିଦାର ଗୋଟିଏ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଉଥିଲେ । ଯାତ୍ରାଟି ଖୁବ୍ ଲମ୍ବା ଥିଲା । ସେ ବସିଥିବା ହାତୀଟିକୁ ବାଟରେ ଶୋଷ ଲାଗିଲା । ମାହୁନ୍ତ କହିଲା, 'ଆମେ ଏଠାରେ କିଛି ସମୟ ପାଇଁ ଅଟକିବା । ହାତୀ ଟିକେ ପାଣି ପିଇନେଉ ।' କିନ୍ତୁ ଜମିଦାର ବ୍ୟସ୍ତ ଥିଲେ ଓ ହାତୀକୁ ଗାଳି ଦେଲେ । ଏଥିରେ ହାତୀଟି ଏତେ ଉତ୍‌କ୍ଷିପ୍ତ ହୋଇଗଲା ଯେ ସେମାନେ ନିଜର ଗନ୍ତବ୍ୟ ଗାଁଟିରେ ପହଞ୍ଚିଲା କ୍ଷଣି ସେ ଜମିଦାର ଓ ତାଙ୍କ ସାଥିମାନଙ୍କୁ ତଳେ ପକାଇଦେଲା । ତା' ପରେ ଜମିଦାରଙ୍କୁ ଶୁଣ୍ଢରେ ଉଠାଇନେଇ ସେ ଭୂଇଁରେ ବାଡ଼େଇ ଦେଲା । ତଥାପି ଏତିକିରେ ସନ୍ତୁଷ୍ଟ ନ ହୋଇ ସେ ତାଙ୍କୁ ବାରମ୍ବାର ଚକଟି ପକାଇଲା ।

ଭୋକ ବି ଗୋଟିଏ ହାତୀକୁ ପାଗଳପ୍ରାୟ କରିଦେଇପାରେ । ବୁଲନ୍ଦଶହର୍‌ରେ ଗୋଟିଏ ବାହାଘର ଚାଲିଥାଏ । ମାହୁନ୍ତ ଟି ବିଭିନ୍ନ କାମରେ ବ୍ୟସ୍ତ ରହିବାଯୋଗୁଁ ଗୋଟିଏ ହାତୀକୁ ଲମ୍ବା ସମୟ ଧରି ଭୋକରେ ରଖିଦିଆଗଲା । ଶେଷରେ ମାହୁନ୍ତ ଯେତେବେଳେ ତା'କଥା ବୁଝିବାକୁ ଆସିଲା ଓ ତା'ର ଶିକୁଳିଟିକୁ ଖୋଲିଦେଲା, ସେ ମାହୁନ୍ତକୁ ଆକ୍ରମଣ କଲା ଓ ପାଦରେ ଚକଟି ମାରିଦେଲା । ହାତୀ ଯଦି ଜାଣିଯାଏ ଯେ ମାହୁନ୍ତ ତା' ଖାଦ୍ୟ ଚୋରି କରୁଛି, ତେବେ ତା'କୁ ସେ କ୍ଷମା ଦିଏ ନାହିଁ ।

ବେଳେ ବେଳେ ହାତୀ ବିନା କାରଣରେ ବି ମଣିଷ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ କରିଥାଏ । କେରଳରେ ଗୁରୁବାୟୁର୍ ମନ୍ଦିରର ପଦ୍ମନଭନ୍ ହାତୀ ବି ଏହାର ଏକ ଉଦାହରଣ ଅଟେ । ଏହି ହାତୀଟି ଗୋଟିଏ ପୁରୁଣା ପୋଷା ହାତୀ ପଲରୁ ହିଁ ଆସିଥିଲା । କିନ୍ତୁ ବଡ଼ ହେଲା ପରେ ସେ ସାଂଘାତିକ ଘାତକ ପ୍ରବୃତ୍ତି ସବୁ ଦେଖାଇବାକୁ ଆରମ୍ଭ କଲା । ସେ ତା'ର ସେବକମାନଙ୍କୁ ଆକ୍ରମଣ କରିବାରେ ଲାଗିଲା, ଯେଉଁମାନେ ତା' ପାଇଁ ଘାସ କାଟି ଆଣି ଦେଉଥିଲେ । ସେ ତାକୁ ପାଦ ଓ ଦାନ୍ତରେ ଆଘାତ କରି ମାରିଦେଲା । ସେ ଛଅଜଣଙ୍କୁ ମାରି ପକାଇଲା । ତେଣୁ ତାକୁ ଗୁଳି କରି ମାରି ଦେବା ପାଇଁ ମାହୁନ୍ତ ନିଷ୍ପତ୍ତି ନେଲା । କିନ୍ତୁ ଏହା କାର୍ଯ୍ୟକାରୀ କରାଯିବା ପୂର୍ବରୁ ମହୀଶୂର (ଏବେକାର କର୍ଣ୍ଣାଟକ)ର ମହାରାଜା ଏହି ହାତୀଟିକୁ କିଣିନେଲେ ।

ତାକୁ ଏବେ କାଠ ବୋହିବା କାମରେ ଲଗାଗଲା । ଏଥିରେ ବି ସେ ପ୍ରକୃତିସ୍ଥ ହେଲାନାହିଁ । ଦିନେ ଜଣେ ଯୁବ ସେବକ ହାତୀଶାଳ ସଫା କରୁଥିବା ସମୟରେ ସେ ତାକୁ ଦାନ୍ତରେ ଭୁଷିଦେଲା ଓ ତାକୁ ନେଇ ନଦୀକୂଳକୁ ଦଉଡ଼ି ପକାଇଲା । ସେଠାରେ ସେ ତାକୁ ଭୂମିରେ ବାରମ୍ବାର ବାଡ଼ଉଥାଏ । କିନ୍ତୁ ତାକୁ ଖୋଜି ଖୋଜି ମାହୁନ୍ତ ଯେତେବେଳେ ତା' ପାଖରେ ପହଞ୍ଚିଲା, ସେ ମାହୁନ୍ତକୁ କୌଣସି ବାଧା ଦେଲାନାହିଁ ଓ ଚୁପ୍‌ଚାପ୍ ତା' ବୋଲ

Digitized by srujanika@gmail.com

ମାନିଲା । ସେ ଯାଏଁ ତା' ଦାନ୍ତରୁ ରକ୍ତ ଥପ ଥପ କରି ତଳେ ପଡୁଥାଏ ।

1583ରେ ଆକବରଙ୍କ ବିଦୂଷକ ବୀରବଲଙ୍କୁ ଗୋଟିଏ ପାଗଳ ହାତୀ ଆକ୍ରମଣ କରିଥିଲା ବୋଲି ଶୁଣିବାକୁ ମିଳେ । କୁହାଯାଏ ଯେ ଆକବର କୁଆଡ଼େ ସେ ଦୁହିଁଙ୍କ ମଝିକୁ ଡେଇଁପଡି ଗଲେ ଓ ବୀରବଲ୍ ବଞ୍ଚିଗଲେ ।

1960ରେ ଉଦ୍‌କାମଣ୍ଡଠାରୁ 16 କି.ମି. ଦୂର ନୀଳଗିରି ଇଲାକାର ଆନ୍ନାଇକୁଟି ଜଙ୍ଗଲରେ ଫ୍ରିଜ୍ କ୍ରୋମେ ନାମକ ଜଣେ ପଶ୍ଚିମ ଜର୍ମାନୀର ଲୋକ ଓ ରାଡ୍‌କ୍ଲିଫ୍ ନାମକ ଜଣେ ୟୁରୋପୀୟ ଲୋକ ବୁଲୁଥିଲେ । ସେମାନେ ବାଘ, ହାତୀ, ଆଦି ବଣୁଆ ଜୀବଙ୍କ ବିଷୟରେ ଜାଣିବା ପାଇଁ ଆଗ୍ରହୀ ଥିଲେ । 53 ବର୍ଷ ବୟସ୍କ କ୍ରୋମେ କିଛିଦିନ ଧରି ଦକ୍ଷିଣ ପଶ୍ଚିମ ଆଫ୍ରିକାର ୱିଣ୍ଡହକ୍ ଠାରେ ରହିଆସୁଥିଲେ । ଏବେ କିଛିଦିନ ପାଇଁ ସେ ନେପାଳ, ଭାରତ ଓ ଅନ୍ୟ ଦେଶଗୁଡ଼ିକ ବୁଲି ଏସୀୟ ଜୀବଜନ୍ତୁଙ୍କ ଅଧ୍ୟୟନ କରୁଥିଲେ । ସେ ବିଭିନ୍ନ ଜୀବଙ୍କର ଛବି ବି ଆଙ୍କୁଥିଲେ ।

ଜୁଲାଇ 28 ତାରିଖ ସକାଳ ସାଢ଼େ ଛଅଟା ବେଳେ ଉଭୟେ ଶୁଣିଲେ ପାଖ ମୁଣ୍ଡିଆ ଉପରେ ବଣୁଆ ହାତୀ ପଲ ବାଉଁଶ ଡାଳ ଭାଙ୍ଗୁଛନ୍ତି । ସେମାନେ ମୁଣ୍ଡିଆଟି ପାଖରେ ପହଞ୍ଚି ଗୋଟିଏ ହାତୀକୁ ଆବିଷ୍କାର କଲେ । କ୍ରୋମେ ନିଜ ବାଇନୋକୁଲାରରେ ଦେଖି ହାତୀଟିର ହାବଭାବକୁ ଲକ୍ଷ୍ୟ କରି ଚାଲିଲେ । ସେ ପ୍ରାୟ 13 ମିଟର ଆଗରେ ଥାଏ । ହଠାତ୍ ହାତୀଟି ପଛକୁ ବୁଲିପଡ଼ି ସେମାନଙ୍କୁ ଆକ୍ରମଣ କଲା । ସେମାନେ ସେଠାରୁ ଦଉଡ଼ି ପଳାଇବାକୁ ଚେଷ୍ଟା କଲେ, ମାତ୍ର ହାତୀଟି ସେମାନଙ୍କ ଠାରୁ କ୍ଷିପ୍ର ଥିଲା । ସେ କ୍ରୋମେଙ୍କୁ ଧରିନେଲା ଓ ଦାନ୍ତରେ ଭୁଷି ମାରିଦେଲା । ତା' ପରେ ସେ ତାଙ୍କ ଦେହ ଉପରେ ଠିଆ ହୋଇଗଲା । ରାଡକ୍ଲିଫ୍ ଏକା ହୋଇଗଲେ । ତାଙ୍କ ମୃତ ସାଙ୍ଗକୁ ଛାଡ଼ି ସେ ଜିପ୍‌ରେ ଚଢ଼ିଗଲେ ଓ ସାହାଯ୍ୟ ପାଇବା ଆଶାରେ ଆନ୍ନାଇକୁଟି ଗାଁକୁ ଚାଲିଲେ । ସେତେବେଳକୁ ରାତି ହୋଇ ସାରିଥାଏ । ତେଣୁ ତାଙ୍କୁ ତା' ପରଦିନ ଯାଏଁ ସେଠାରେ ଅପେକ୍ଷା କରିବାକୁ ପଡ଼ିଲା ।

ସକାଳେ ସାଥିରେ ଜଣେ ଫରେଷ୍ଟ ଗାର୍ଡ, ଜଣେ ଫରେଷ୍ଟ ୱାର୍ଡର୍ ଓ 15 ଜଣ ଗ୍ରାମବାସୀଙ୍କୁ ନେଇ ରାଡ୍‌କ୍ଲିଫ୍ ସେହି ଜାଗାରେ ପହଞ୍ଚିଲେ । ହାତୀଟି ସେ ଯାଏଁ ତା' ଶିକାରଟି ପାଖରେ ଠିଆ ହୋଇଥାଏ । ସମସ୍ତେ ମିଶି ହାତୀଟିକୁ ସେଠାରୁ ତଡ଼ିଦେଲେ । ଶବଟି ସେଠାରେ ମୁହଁମାଡ଼ି ପଡ଼ିଥାଏ । ଏହାର ବାଁ ପଟେ ହାତୀର ଦାନ୍ତ ଦ୍ୱାରା ଏକ ବିରାଟ ଗାତ ହୋଇଯାଇଥାଏ ।

ଥରେ ଜଣେ ଜର୍ମାନୀ ଲୋକ ଉଗାଣ୍ଡାର ଜାତୀୟ ପାର୍କରେ ଗୋଟିଏ ହାତୀର ଫଟୋ ଉଠାଇବା ପାଇଁ ତାଙ୍କ କାର୍‌ରୁ ଓହ୍ଲାଇ ପଡ଼ିଲେ । ହାତୀଟି ତାଙ୍କୁ ଏହି ସମୟରେ ଆକ୍ରମଣ କଲା ଓ ସେ ପ୍ରାଣ ବିକଳରେ ପାଖ ବୁଦାକୁ ଦଉଡ଼ି ପଳାଇଲେ । ହାତୀଟି ତାଙ୍କୁ ତାଙ୍କର ଲୁଚିବା ଜାଗାରେ ଠାବ କରିନେଲା ଓ ତାଙ୍କୁ ଉପରକୁ ତିନିଥର ଫିଙ୍ଗିଦେଲା । ଏଥର ସେ ତାଙ୍କୁ ଦାନ୍ତରେ ଭୁଷି ଦେବାକୁ ଯାଉଥାଏ, ସେହି ଫଟୋଗ୍ରାଫର୍ ଜଣଙ୍କର ବଞ୍ଚିବାର ଥିଲା । ତେଣୁ ସେ କୌଣସିମତେ ବଞ୍ଚିଗଲେ; କିନ୍ତୁ ତାଙ୍କ ଦେହରେ ଅନେକ ଗୁଡ଼ିଏ କ୍ଷତ

Digitized by srujanika@gmail.com

ହୋଇଯାଇଥିଲା । ତାଙ୍କର ପିଞ୍ଜରାର ଗୋଟିଏ ହାଡ଼ ଭାଙ୍ଗିଯାଇଥିଲା ଓ ଦାନ୍ତ ମାଡ଼ରେ ତାଙ୍କ ଜଂଘରେ ଏକ ଗଭୀର କ୍ଷତ ସୃଷ୍ଟି ହେଇଥିଲା ।

1968 ମସିହା ମେ' ମାସରେ ମୁଁ ବଣୁଆ ଜୀବଜନ୍ତୁଙ୍କ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ଉତ୍ତର ପ୍ରଦେଶର ତେରାଇ ଜଙ୍ଗଲରେ ବୁଲୁଥିଲି । ସେତେବେଳେ କେତେକ ଜୀବ ଏହି ଇଲାକାଟିରେ ଆତଙ୍କ ଖେଳାଇ ଦେଇଥାନ୍ତି – ପ୍ରାୟ ଚାରିଜଣ ଲୋକଙ୍କର ପ୍ରାଣହାନି ଘଟିଥିଲା ଏବଂ ମତେ ଯତ୍ନବାନ ହେବାପାଇଁ ସମସ୍ତେ ସତର୍କ କରି ଦେଇଥିଲେ । ମୋ ଦଳଟି ପାଖରେ ଦୁଇଟି 16 ମି.ମି. ମୁଭି କ୍ୟାମେରା ଓ ଚାରିଟି ସ୍ଥିର ଚିତ୍ର କ୍ୟାମେରା ଥିଲା । ଆମେ ଆମ ପାଇଁ ପୂରାପୂରି ପ୍ରସ୍ତୁତ ହୋଇ ଯାଇଥିଲୁ । ଆମ ପାଖରେ କେତୋଟି ଶକ୍ତିଶାଳୀ ଟେଲିଫଟୋ ଲେନ୍ସ୍ ବି ଥିଲା । ଆମ ପାଖରେ ଅବଶ୍ୟ ଜିପ୍ ବା ଅନ୍ୟ କୌଣସି ଗାଡ଼ି ନ ଥିଲା । ଆମେ ସବୁକାମ ଚାଲି ଚାଲି ବା ଜଙ୍ଗଲ ବିଭାଗଠାରୁ ଆମେ ଆଣିଥିବା ପୋଷା ମାଈ ହାତୀଙ୍କ ପିଠିରେ ବସି କରୁଥିଲୁ । ଅନେକ ସମୟରେ ମସ୍ତ ହୋଇଥିବା ଦନ୍ତା ହାତୀମାନେ ଆମର ପିଛା କରିଥିଲେ । ଏଠାରେ ହାତୀମାନଙ୍କର ଆଚରଣ ବିଷୟରେ ଥିବା ଆମର ଜ୍ଞାନ ଆମକୁ ଯଥେଷ୍ଟ ସାହାଯ୍ୟ କରିଥିଲା । ଫଳରେ ଆମେ ଆମ କାମକୁ ଭଲରେ କରି ପାରିଲୁ ଏବଂ ଆମେ ନିଜକୁ ଓ ଆମର ଉପକରଣଗୁଡ଼ିକୁ ସୁରକ୍ଷିତ ରଖିପାରିଲୁ ।

ଏପ୍ରିଲ୍ 3 ତାରିଖରେ, ଦିନକର କାମ ସରିବା ପରେ ଜଙ୍ଗଲ ଠିକାଦାରଙ୍କ ଦ୍ୱାରା ନିଯୁକ୍ତ କେତେଜଣ ମଜୁରିଆ ଜାଳେଣି କାଠ ଏକାଠି କରି ଘରକୁ ଯିବାକୁ ବାହାରିଲେ । ତାଙ୍କର କୁଡ଼ିଆଗୁଡ଼ିକ ଡୁମାରିଆ ଛକ ନିକଟରେ ଥିଲା । ସନ୍ଧ୍ୟା ହୋଇଯାଇଥିଲା । ମଜୁରିଆମାନେ ଜାଣିଥିଲେ ଯେ ସେହି ପାଖାପାଖି ଇଲାକାରେ ହାତୀମାନେ ଚରୁଥିବେ । ରାସ୍ତା କଡ଼ରେ ହାତୀ ଗଛ ଲତାର ଡାଳ ଭାଙ୍ଗିବା ଶବ୍ଦ ସେମାନେ ଶୁଣି ବି ପାରୁଥିଲେ । ମଜୁରିଆମାନେ ସାଥିରେ ଖାଲି ଡବାଟିଏ ଧରି ଯାଉଥାନ୍ତି । ସେମାନେ ଏହା ବାଡ଼େଇ ବାଡ଼େଇ ଚିତ୍କାର କରିବାରେ ଲାଗିଲେ । ଏଥିରେ କେତୋଟି ହାତୀ ତରକିଗଲେ । କେତୋଟି ହାତୀ ଆଗ ରାସ୍ତାରେ ଦଉଡ଼ିବାରେ ଲାଗିଲେ । କିଛି ସମୟ ପରେ ଗୋଟିଏ ମାଈ ହାତୀ ପଛକୁ ବୁଲିପଡ଼ିଲା ଓ ଜୋର୍‌ରେ ଗର୍ଜନ କରି କରି ମଜୁରିଆମାନଙ୍କୁ ଆକ୍ରମଣ କଲା । ଦଳର ଅନ୍ୟ ହାତୀମାନେ ବି ତା'ସହ ଏଥିରେ ଯୋଗଦେଲେ । ମଜୁରିଆନେ କାଠଗୋଛାକୁ ଫିଙ୍ଗିଦେଇ ପ୍ରାଣ ବିକଳରେ ଦଉଡ଼ିବାରେ ଲାଗିଲେ । କିନ୍ତୁ ଦୁଇ ଜଣଙ୍କର ଭାଗ୍ୟ ମନ୍ଦ ଥିଲା । ସେମାନଙ୍କ ଘର ଟିକେ ଅଧିକ ଦୂର ଥିଲା । ଆଠ ଜଣଙ୍କ ମଧ୍ୟରୁ ମାତ୍ର ଛଅ ଜଣ ଘରେ ନିରାପଦରେ ପହଞ୍ଚି ପାରିଲେ । ସେମାନେ ଏତେ ଡରି ଯାଇଥିଲେ ଯେ ବାହାରକୁ ଯାଇ ତାଙ୍କ ସାଥି ଦୁହିଁଙ୍କ ଦେହକୁ ଖୋଜିବାକୁ ତାଙ୍କର ସାହସ ନଥିଲା । ସକାଳେ ଗୋଟିଏ ଦଳ ସେହି ଜାଗାକୁ ବାହାରିଲେ । ଗୋଟିଏ ଦେହ ସାଂଘାତିକ ଭାବେ ଚିରି ମାଟିରେ ଚକଟି ହୋଇ ପଡ଼ିଥିଲା । ମୁଁ ଶୁଣିଲି, ତା' ଦେହର ଅନେକ ଜାଗାରେ ଚମ ଉତାରି ଦିଆଯାଇଥିଲା ।

ଛପାଓ୍ୱାଲା ନିକଟସ୍ଥ ଭାଭାର୍ ଇଲାକାରେ ଘାସକଟା ଚାଲିଥାଏ । ମୂଲ ଲାଗିଥିବା ଲୋକଙ୍କ ମଧ୍ୟରେ କେତେଜଣ ମହିଳା ଥିଲେ । ଦିନେ ତିନିଜଣ ମହିଳା ପାଖ ଗୋଦାମକୁ

Digitized by srujanika@gmail.com

ଘାସ ନେଇ ଯାଉଥାନ୍ତି । ଘାସର ବିରାଟକାୟ ବୋଝରେ ସେମାନଙ୍କ ମୁହଁ ପ୍ରାୟ ଲୁଚିଯାଉଥିଲା । ସେମାନେ ନିଜ ବାଟ ବି ଦେଖିପାରୁ ନଥିଲେ । ସେ ସମୟରେ ସେହି ବାଟରେ ପାଣି ପିଉଥିବା ଗୋଟିଏ ହାତୀକୁ ସେମାନେ ଦେଖିପାରିଲେ ନାହିଁ । ଜଣେ ମହିଳା ତା' ଦେହରେ ବାଡ଼େଇ ହୋଇଗଲା । ହାତୀଟି ସାଙ୍ଗେ ସାଙ୍ଗେ ତାକୁ ଠେଲିଦେଲା ଓ ପାଦରେ ଦଳିଦେଲା ।

ଥରେ ପଲେ ହାତୀ ଗୋଟିଏ କ୍ଷେତରେ ଶସ୍ୟ ଖାଉଥିଲେ । କ୍ଷେତ ମାଲିକ ବାରୁଦ ଫୁଟାଇ ତାଙ୍କୁ ସେଠାରୁ ତଡ଼ିଦେଲା । ଏହା ଗୋଟିଏ ଦନ୍ତା ହାତୀକୁ କିଛି ମାତ୍ରାରେ ଆଘାତ କଲା । ସେ ଏଥିରେ ଉତ୍‌କ୍ଷିପ୍ତ ହେଇଗଲା । ସେ ଜଙ୍ଗଲରେ ପଶିବା ପରେ ପ୍ରଥମେ ଦେଖିବା ଲୋକ ଜଣଙ୍କୁ ଠେଲି ପକାଇ ଦେଲା ଓ ପ୍ରାଣରେ ମାରିଦେଲା ।

ସାଧାରଣତଃ ହାତୀମାନେ ମଣିଷକୁ ଆକ୍ରମଣ କରି ନ ଥାନ୍ତି । ସେମାନେ ଜାଣିଥାନ୍ତି ଗୋଟିଏ ରାଇଫଲ୍ କ'ଣ; କିନ୍ତୁ କୌଣସି ବୋକା ଶିକାରୀ ଯଦି ହାତୀକୁ ନ ମାରି ଘାଇଲା କରିଦିଏ, ତେବେ ସେ ଗୁଳିଠାରୁ କ୍ଷିପ୍ର ବେଗରେ ତାକୁ ଆକ୍ରମଣ କରିଥାଏ । ଆଫ୍ରିକାର ଜଙ୍ଗଲରେ ଚାରିଜଣ ହାତୀଦାନ୍ତ ବ୍ୟବସାୟୀ ଥରେ ଗୋଟିଏ ହାତୀପଲକୁ ଚରୁଥିବାର ଦେଖିଲେ । ସେମାନଙ୍କ ମଧ୍ୟରୁ ଜଣେ ପାଖରେ ଥିବା ଗୋଟିଏ ହାତୀ ଉପରକୁ ଗୁଳି ଚଳାଇଦେଲା । ଅଳ୍ପ ଆଘାତ ପାଇଥିବା ଦନ୍ତା ହାତୀଟି ପ୍ରବଳ ବେଗରେ ତାକୁ ଆକ୍ରମଣ କଲା । ଏହା ଦେଖି ଚାରିଜଣଯାକ ଲୋକ ଆଖିମୁଦି ହାତୀଟି ଆଡ଼କୁ ଗୁଳି ଚଳାଇଲେ । ସେମାନେ କିଛି କରିପାରିଲେ ନାହିଁ କିନ୍ତୁ 34ଟି ଗୁଳିମାଡ଼ ଖାଇଥିବା ହାତୀଟିର ଶବ ପାଖରେ ଚାରିଟି ଚକଟି ହୋଇଯାଇଥିବାର ମାଂସ ପିଣ୍ଡୁଳା ହିଁ ପରେ ଦେଖିବାକୁ ମିଳିଥିଲା ।

*ଓଡ଼ିଶାର ଚକାପାଦ ଫିରକା* ଜଙ୍ଗଲରେ ଥରେ ଗୋଟିଏ ପାଗଳ ହାତୀ ଗୋଟିଏ ପକ୍ଷ ମଧ୍ୟରେ 20 ଜଣ ଲୋକଙ୍କୁ ମାରି ଦେଇଥିଲା । ସେ କେତେକ ଜୀବଜନ୍ତୁଙ୍କୁ ବି ମାରି ପକାଇଲା । *ଫୁଲବାଣୀ*ର ପୋଲିସ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଗୋଟିଏ ପୋଲିସ ବାହିନୀ ସହିତ ହାତୀଟିକୁ ମାରିଦେବା ପାଇଁ ପଠାଗଲା, ଦଳଟି ପତଳା ଜଙ୍ଗଲ ଦେଇ ଧୀରେ ଧୀରେ ଚାଲିଥାଏ । ଏହି ସମୟରେ ଅତର୍କିତ ଭାବରେ ଦନ୍ତା ହାତୀଟି ତାଙ୍କ ଆଡ଼କୁ ମାଡ଼ିଆସିଲା । ସେମାନେ ଛିନ୍ନଛତ୍ର ହୋଇ କିଏ କୁଆଡ଼େ ପଳାଇଗଲେ । ଏହି ଠେଲା ପେଲାରେ ସୁପରିନ୍‌ଟେଣ୍ଡେଣ୍ଟ ଓ ଅନ୍ୟ କେତେଜଣ ଖଣ୍ଡିଆ ଖାବରା ହେଲେ । ସୁପରିନ୍‌ଟେଣ୍ଡେଣ୍ଟ ଗୋଟିଏ ହାତୀ ଉପରେ ରାତି କଟାଇଲେ । ଅନେକ ଜାଗାରେ କ୍ଷତ ବିକ୍ଷତ ହୋଇଥିବା ଯୋଗୁଁ ପରେ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି ହେବାକୁ ପଡ଼ିଲା । ସରକାର ଘୋଷଣା କଲେ, ଦନ୍ତା ହାତୀଟିକୁ ମାରିଲେ ହଜାର ଟଙ୍କା ପୁରସ୍କାର ଦିଆଯିବ ।

ପୁରାତନ ଭାରତରେ ଦଣ୍ଡ ଦେବାର ଗୋଟିଏ ପ୍ରଥା ଥିଲା, ଦୋଷୀକୁ ହାତୀର ପାଦତଳେ ପକାଇ ଦିଆଯାଉଥିଲା । ହାତୀ ତାକୁ ଦଳି ଦେଉଥିଲା । ଇତିହାସ ବହିରେ ଏହି ପ୍ରକାରର ଦଣ୍ଡବିଧାନର ଅନେକ ନଜିର ରହିଛି । ପଥର ଖୋଦେଇରେ ବି ଏହାର ଅନେକ ପ୍ରମାଣ ରହିଛି । କୋଣାର୍କ ମନ୍ଦିରର ଫାଟକରେ ଏପରି ଗୋଟିଏ ବିରାଟକାୟ ମୂର୍ତ୍ତି ରହିଛି

Digitized by srujanika@gmail.com

ଯେଉଁଥିରେ ଗୋଟିଏ ଦନ୍ତା ହାତୀ ଜଣେ ଲୋକକୁ ପାଦ ତଳେ ଚାପି ମାରି ଦେଉଛି । ଓଡ଼ିଶାର ପରାକ୍ରମୀ ରାଜା, ନରସିଂହ ଦେବ (1238-64 ଖ୍ରୀ.ଅ) ଏହି ମୂର୍ତ୍ତିଟି ମାଧ୍ୟମରେ ଲୋକଙ୍କୁ ସତର୍କ କରିଦେଇଥିଲେ । କେହି ଯଦି ଅପରିଷ୍କାର ହୃଦୟରେ ମନ୍ଦିରରେ ପ୍ରବେଶ କରେ, ତେବେ ଏହି ମୂର୍ତ୍ତିଟିରେ ଦେଖାଯାଇଥିବା ପରି ସେହି ଲୋକଟିକୁ ଦଣ୍ଡ ଦିଆଯିବ । ଏହି ମନ୍ଦିରରେ ଆଉ ଏକ ମୂର୍ତ୍ତିରେ ହାତୀଟିଏ ଯୁଦ୍ଧରେ ଲିପ୍ତ ଥିବାର ଦେଖିବାକୁ ମିଳେ । ସେ ବିପକ୍ଷ ଦଳର ଶତ୍ରୁକୁ ଶୁଣ୍ଢରେ ଟେକି ଭୂମିରେ ବାଡ଼େଇ ଦେବାକୁ ଯାଉଛି ।

ଗୌତମ ବୁଦ୍ଧଙ୍କର ଦେବଦତ୍ତ ନାମରେ ଜଣେ ସମ୍ପର୍କୀୟ ଭାଇ ଥିଲେ । ସେ ବୁଦ୍ଧଦେବଙ୍କୁ ଈର୍ଷା କରୁଥିଲେ । ତାଙ୍କୁ କୌଣସି ଉପାୟରେ ମାରି ଦେବା ପାଇଁ ସେ ସବୁବେଳେ ଯୋଜନା କରି ଚାଲିଥିଲେ । ଥରେ ସେ ଗୋଟିଏ ପାଗଳା ହାତୀକୁ ଗୌତମ ବୁଦ୍ଧଙ୍କ ପାଖରେ ଛାଡ଼ିଦେଲେ । କିନ୍ତୁ ହାତୀଟି ଯେତେବେଳେ ବୁଦ୍ଧଙ୍କ ପାଖରେ ପହଞ୍ଚିଗଲା, ସେ ଶାନ୍ତ ହୋଇଗଲା ଓ ଗୌତମଙ୍କ ପାଖରେ ମୁଣ୍ଡ ନୁଆଁଇ ଠିଆ ହେଲା । ଏହି ଘଟଣାଟିକୁ ଅଜନ୍ତାର ଗୋଟିଏ ମୂର୍ତ୍ତିରେ ଦେଖାଯାଇଛି । କୃଷ୍ଣଙ୍କୁ ମାରିବା ପାଇଁ ବି ଗୋଟିଏ ପାଗଳା ହାତୀକୁ ପଠାଯାଇଥିଲା ବୋଲି ଲେଖାଅଛି ।

ଦିଲ୍ଲୀର ଆଫଗାନ୍ ଶାସକ, ସିକନ୍ଦର ଲୋଦୀ ଆଦେଶ ଦେଇଥିଲେ ଯେ, କବୀରଙ୍କୁ ଗୋଟିଏ ହାତୀର ପାଦତଳେ ପକାଇ ଦିଆଯାଉ । ସେ ତାଙ୍କୁ ପାଦରେ ଦଳି ମାରିଦେବ । କିନ୍ତୁ କବୀରଙ୍କ ଆଗରେ ହାତୀଟି ପୂରା ନରମି ଶାନ୍ତ ହୋଇଗଲା । ମୁଣ୍ଡ ତଳକୁ କରି ସେ ତାଙ୍କ ପାଖରେ ବସିଗଲା ।

## ପିଲାଙ୍କ ପ୍ରତି ସ୍ନେହ

ବିଶାଳକାୟ ଜୀବଜନ୍ତୁଙ୍କ ମଧ୍ୟରେ ହାତୀ ବୋଧହୁଏ ସବୁଠୁ ବୁଦ୍ଧିମାନ ଓ ସ୍ନେହୀ ଜୀବ ଅଟେ । ମା' ହାତୀଟିଏ ନିଜ ଛୁଆକୁ ଠିକ୍ ମଣିଷ ପରି ବା ବେଳେ ବେଳେ ମଣିଷଠୁ ବି ବେଶି ସ୍ନେହ କରିଥାଏ ।

ଆଫ୍ରିକାରେ ଗୋଟିଏ ମାଈ ହାତୀ ତା'ର ଛୁଆଟିକୁ ବୋହି ଧରି ବୁଲୁଥିବାର ଦେଖିବାକୁ ମିଳିଥିଲା । ଛୁଆଟି ଏହାର ଦୁଇଦିନ ଆଗରୁ ମରି ସାରିଥିଲା । ସେ ଖାଇବା ବା ପିଇବା ସମୟରେ ତାକୁ ତଳେ ରଖି ଦେଉଥିଲା । ତା' ପରେ ପୁଣି ଏହାକୁ ଉଠାଇ ବୁଲୁଥିଲା ।

ଲାନ୍ସ୍ କର୍ପୋରାଲ୍ ବାଟେଲିମାଓ ସେହିପରି ଆଉ ଏକ ହାତୀର ତା' ଛୁଆ ପ୍ରତି ସ୍ନେହକୁ ଲେଖି ରଖିଥିଲେ । ଆଫ୍ରିକାର ରାଣୀ ଏଲିଜାବେଥ୍ ପାର୍କରେ ବୁଲୁଥିବା ସମୟରେ ସେ ଗୋଟିଏ ହାତୀର ଗର୍ଜନ ଶୁଣିବାକୁ ପାଇଲେ । ତା' ପରେ ସେ 1600 ମିଟର ଦୂରରେ ଗୋଟିଏ ହାତୀକୁ ଦେଖିବାକୁ ପାଇଲେ । ହାତୀଟି ଠାରୁ କେତେ ମିଟର ଦୂରରେ ଗୋଟିଏ ଭୋକିଲା ସିଂହ ଓ ସିଂହୀ ଜିଭ ବାହାରକରି ଛକି ବସିଥିଲେ । ସେମାନେ କ୍ଷିପ୍ତ ହାତୀଟି ପାଖରେ ପଶିବାକୁ ସାହସ କରି ପାରୁ ନ ଥିଲେ । ସେମାନେ ଦେଢ଼ଘଣ୍ଟା ଯାଏଁ ସେପରି ବସି ରହିଲେ । ହାତୀଟି ଥରକୁ ଥର ତାଙ୍କ ଆଡ଼କୁ ମାଡ଼ିଯାଉଥିଲା ଓ ପୁଣି ଅଟକି ଯାଉଥିଲା ।

Digitized by srujanika@gmail.com

ତା' ପରଦିନ  କର୍ପୋରାଲ୍ ଜଣକ ପୁଣିବୁଲିବାକୁ ଆସି ଦେଖିଲେ, ସିଂହ ଦୁଇଟି ସେହିପରି ହିଁ ବସି ରହିଛନ୍ତି ଓ ଆଶ୍ଚର୍ଯ୍ୟ ହୋଇଗଲେ । ସେତେବେଳକୁ ହାତୀଟି ଯଥେଷ୍ଟ ଥକି ଯାଇଥାଏ ଓ ସିଂହ ଦୁଇଟି ତା' ପାଖକୁ ଲାଗି ଆସିଥାନ୍ତି । ସେ ଆହୁରି ଦେଖିଲେ ହାତୀଟି ତା' ପାଖରେ ପଡ଼ିଥିବା ଏକ ମଲା ହାତୀଛୁଆକୁ ଜଗି ରହିଛି । ତିନିଦିନ ଧରି ଏପରି ଅପେକ୍ଷା କରି କରି ସିଂହ ଦୁଇଟି ଶେଷରେ ଫେରିଗଲେ । ତଥାପି ଆହୁରି ତିନିଦିନ ଯାଏଁ ହାତୀଟି ସତର୍କତାର ସହ ନିଜ ଛୁଆଟିକୁ ଜଗି ରହିଲା ପରେ ହିଁ ସେହି ଜାଗାଟିକୁ ଛାଡ଼ିଲା ।

ମା'ଠାରୁ ଗୋଟିଏ ହାତୀଛୁଆକୁ ଛଡ଼ାଇ ନିଆଯିବା ବେଳର ଦୃଶ୍ୟ ଅତୀବ ହୃଦୟ-ବିଦାରକ ହୋଇଥାଏ । ହାତୀ ଛୁଆଟିର ଆର୍ତ୍ତନାଦ ଅତି କରୁଣ ମନେ ହୋଇଥାଏ । ମା'ର ରୋଦନ ବି ସେହିପରି ହୋଇଥାଏ । ମା' ଯଦିଓ ଜାଣିଥାଏ ଯେ, ଛୁଆକୁ ପାଖରେ କେଉଁଠି ବନ୍ଧା ହୋଇଛି, ତଥାପି ତାକୁ ଦେଖି ନ ପାରିଲେ ତା'ମନ ବୁଝେ ନାହିଁ ଓ ସେ ଉଚ୍ଚ ସ୍ୱରରେ କାନ୍ଦିବାରେ ଲାଗେ ।

ପୋଷା ହାତୀଗୁଡ଼ିକ ସାଧାରଣତଃ ମାଲିକମାନଙ୍କ ପ୍ରତି ଅନୁରକ୍ତ ହୋଇପଡ଼ିଥାଆନ୍ତି । ସେମାନେ ପିଲାମାନଙ୍କୁ ବି ଯଥେଷ୍ଟ ଭଲ ପାଆନ୍ତି । ଭାରତ-ଭୂଟାନ୍ ସୀମାନ୍ତରେ ଥିବା ଜଙ୍ଗଲରୁ ଗୋଟିଏ ବର୍ଷିକିଆ ହାତୀଛୁଆକୁ ଧରାଯାଇଥିଲା ଓ ତାକୁ ଆମେରିକାର ସେଣ୍ଟ୍ ଲୁଇସ୍ ଚିଡ଼ିଆଖାନାକୁ ପଠାଯାଇଥିଲା । ତାକୁ ଉଡ଼ାଜାହାଜରେ ଆମେରିକା ପଠାଯିବା ପାଇଁ ଦମ୍‌ଦମ୍  ବିମାନଘାଟୀକୁ ନିଆଯିବା ବେଳେ ତାକୁ ବିଦାୟ ଦେବାକୁ ଆସିଥିବା ଲୋକଙ୍କ ଭିତରେ ତା' ମାଲିକଙ୍କ ଛଅ ବର୍ଷର ଛୁଆଟି ବି ଥିଲା । ହାତୀ ଛୁଆ ଏହି ଛୁଆଟି ପ୍ରତି ଯଥେଷ୍ଟ ଅନୁରକ୍ତ ଦେଖାଇଥିଲା ।

ତାକୁ ଯେତେବେଳେ ଜନ୍ତାରୁ ବିମାନକୁ ନିଆଗଲା, ସେ ନିଜ ଶୁଣ୍ଢକୁ ବାରମ୍ବାର ବାହାରକୁ ବଢ଼ାଇ ପିଲାଟିର ହାତକୁ ଧରି ପକାଉଥାଏ ଓ ତାକୁ ନିଜ ଆଡ଼କୁ ଭିଡ଼ିବାକୁ ଚେଷ୍ଟା କରୁଥାଏ । ପିଲାଟି କାନ୍ଦି କାନ୍ଦି ଅତିଷ୍ଠ ହୋଇଯାଉଥାଏ,  ହାତୀ ଛୁଆଟିର ଆଖିରୁ ବି ଲୁହ ବୋହି ଯାଉଥାଏ । ବିମାନ ଗଡ଼ିବାକୁ ଆରମ୍ଭ କଲାକ୍ଷଣି ହାତୀଛୁଆ ଏକ ବଡ଼ ଗର୍ଜନ କରିଥିଲା ।

ଏହାଠୁ ଆହୁରି ହୃଦୟସ୍ପର୍ଶୀ ଥିଲା କମଲା ସର୍କସ୍‌ର ମାଈ ହାତୀ, ଲକ୍ଷ୍ମୀର କାମ । ସର୍କସ୍‌ର ଫାଟକରେ ଯେତେବେଳେ ଲୋକଙ୍କ ଭିଡ଼ ଅତିରିକ୍ତ ହୋଇଯାଉଥିଲା, ତା' ମାଲିକ ଲୋକଙ୍କୁ ନିୟନ୍ତ୍ରଣ କରିବା ପାଇଁ ଲକ୍ଷ୍ମୀକୁ ସେଠାକୁ ନେଇ ଆସୁଥିଲେ । ସେ ଆଗେଇ ଆସିବ ଓ ଶୁଣ୍ଢରେ ଧରିଥିବା ବାଡ଼ିଟିରେ ଲୋକଙ୍କୁ ଧୀରେ ଧୀରେ ବାଡ଼େଇ ସେ ଲୋକଙ୍କୁ ହଟାଇ ଦେବ । ଏହି କାମ କରିବାରେ ସେ ବେଶ୍ ଧୂରନ୍ଧର ହୋଇଯାଇଥିଲା ।

କୌଣସି ଗଣ୍ୟମାନ୍ୟ ଲୋକ ସର୍କସ୍ ଦେଖିବାକୁ ଆସିଲେ, ତା' କାମ ଥିଲା ତାଙ୍କ ବେକରେ ଫୁଲମାଳ ଦେବା । ସେ ନିଜେ ବି ଏହି କାମଟିକୁ ଉପଭୋଗ କରୁଥିଲା । ଏହାଛଡ଼ା ପ୍ରତିଦିନ ସର୍କସ୍ ଶିବିରରେ କରାଯାଉଥିବା ପୂଜାରେ ବି ସେ ଯୋଗ ଦେଉଥିଲା । ଘଣ୍ଟି ବାଜିବା ଶୁଣିବା କ୍ଷଣି ସେ ସାଙ୍ଗେ ସାଙ୍ଗେ ଚାଲିଆସିବ ଓ ଭକ୍ତମାନଙ୍କ ସହ ଯୋଗଦେବ

Digitized by srujanika@gmail.com

ଏବଂ ଶେଷରେ *ପ୍ରସାଦ* ବଣ୍ଟାଯିବାଯାଏଁ ସେ ସେଠାରେ ରହିଥିବ ।

ଏହି ଅତି ଚାଲାକ୍ ମାଈ ହାତୀଟି ମଣି ନାମକ ଗୋଟିଏ ଅଣ୍ଡିରା ହାତୀକୁ ଭଲ ପାଉଥିଲା । ମଣି ବି ତା'କୁ ଖୁବ୍ ଭଲ ପାଉଥିଲା । ଲକ୍ଷ୍ମୀ ଆଉ କୌଣସି ଅଣ୍ଡିରା ହାତୀ ସହ ଖେଳାଖେଳି କଲେ ସେ ଜମା ସହିପାରୁ ନ ଥିଲା । ମାହୁନ୍ତ ସେ ଦୁହିଁଙ୍କୁ ଅଲଗା ଅଲଗା ଜାଗାରେ ବାନ୍ଧିଦେଲେ ବି ସେ ଖୁବ୍ ଜୋରରେ ପ୍ରତିବାଦ କରୁଥିଲା । କିନ୍ତୁ ସମସ୍ତେ ଏହାକୁ ବୁଝିପାରିଥିଲେ ଓ ସେ ଦୁହିଁଙ୍କୁ ଅଲଗା ରହିବାକୁ ଦେଉ ନ ଥିଲେ ।

ଦିନେ ମଣିର ପେଟ ଖୁବ୍ ଜୋର୍‌ରେ କାଟିଲା ସେ ଅସୁସ୍ଥ ହୋଇପଡ଼ିଲା । ତାକୁ ଭଲ କରିବା ପାଇଁ ସବୁକିଛି କରାଗଲା; କିନ୍ତୁ ସେ ଭଲ ହେଲା ନାହିଁ, ଅଳ୍ପ କିଛିଦିନ ପରେ ସେ ମରିଗଲା । ଏହା ଲକ୍ଷ୍ମୀକୁ ଏକ ଶକ୍ତ ଧକ୍କା ଦେଲା । ସେ ତା' ଦେହ ଉପରେ ଠିଆ ହୋଇ ତା' କୁନି ଆଖି ଦୁଇଟିରୁ ଅସରା ଲୁହ ଢାଳିଚାଲିଲା । ତା' ଶବଟିକୁ ସେଠାରୁ ବାହାର କରିନେଇ ତା'ର ଶେଷ ସଂସ୍କାର କରି ଦିଆଗଲା । ଲକ୍ଷ୍ମୀ ତା'ର ହଜିଲା ସାଥୀଟିର ଖାଲି ଜାଗାଟି ଚାରିପାଖରେ ହିଁ ବୁଲିଲା ଓ ଯେତେ ବୁଝାଇଲେ ବି ବୁଝିଲା ନାହିଁ । ସେ ଦିନର *ପୂଜା* ଘଣ୍ଟି ପୁଣି ବାଜିଲା ଓ ଭକ୍ତମାନେ ପ୍ରାର୍ଥନା ପାଇଁ ସେଠାରେ ଏକାଠି ହେଲେ; କିନ୍ତୁ ଅନେକ ବର୍ଷ ଭିତରେ ପ୍ରଥମ ଥର ପାଇଁ ଲକ୍ଷ୍ମୀ ସେଦିନ *ପୂଜା*କୁ ଗଲା ନାହିଁ । ସେ *ପ୍ରସାଦ* ବି ଛୁଇଁଲା ନାହିଁ । ସେ କୌଣସି ଖାଦ୍ୟ ଗ୍ରହଣ କଲା ନାହିଁ । ମଣି ଯିବାର ପନ୍ଦର ଦିନ ପରେ ଲକ୍ଷ୍ମୀ ବି ଆଖି ବୁଜିଦେଲା ।

## ଏକ ଉପକାରୀ ଜୀବ

ସମୟ ସମୟରେ ବଣୁଆ ହାତୀମାନେ ଶସ୍ୟ କ୍ଷେତ୍ରଗୁଡ଼ିକର ଅନେକ କ୍ଷତି କରିଥାନ୍ତି । ଅନ୍ୟ ସମୟରେ ସେମାନେ କେତେକ ହାନି କରିପାରନ୍ତି । କିନ୍ତୁ ଠିକ୍ ରୂପେ ତାଲିମ ଦିଆଯାଇଥିବା ହାତୀ ମଣିଷ ପାଇଁ ସବୁଠୁ ଉପକାରୀ ଜୀବର କାମ କରିଥାଏ । ଧାର୍ମିକ ଶୋଭାଯାତ୍ରାଗୁଡିକ ସମୟରେ ହାତୀ ଏହାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ବୋଲି ବିଚାର କରାଯାଇଥାଏ । ବଡ଼ ବଡ଼ ଗୁଳିଚାଳନା ପ୍ରତିଯୋଗିତାରେ ବି ହାତୀମାନଙ୍କୁ କାମରେ ଲଗାଯାଉଥାଏ ।

ଭାରତରେ ବ୍ରିଟିଶ ରାଜତ୍ୱର ଆରମ୍ଭ ସମୟରେ, ଜଙ୍ଗଲ କାଟି ସଫା କରାଯିବା ଓ ପରିବହନ ଆଦି କାମରେ ହାତୀମାନଙ୍କୁ ଅଧିକ ସଂଖ୍ୟାରେ ବ୍ୟବହାର କରାଯାଉଥିଲା । ଏହି ଉଦ୍ଦେଶ୍ୟରେ ଆସାମର ଚା' ଚାଷୀମାନେ ଅଧିକ ସଂଖ୍ୟାରେ ହାତୀ ପାଳୁଥିଲେ । ଅନେକ ଚା ବଗିଚାରେ କୁଡ଼ିଆ ନିକଟରେ ମଞ୍ଚ ବନାଯାଉଥିଲା ଯେପରି ସେମାନେ ସେଠାରୁ ସିଧା ହାତୀ ପିଠିରେ ବସିପାରିବେ । ଆସାମ ଓ ଉତ୍ତର ବଙ୍ଗଳାରେ ନିଜେ ଓ ନିଜ ଅନୁଚରଙ୍କ ଯାତାୟତ ପାଇଁ ପ୍ରତି ଜିଲ୍ଲାପାଳଙ୍କ ପାଖରେ ଅନେକ ହାତୀ ପୋଷା ଯାଉଥିଲେ ।

ଜଙ୍ଗଲରେ କାଠ ବୋହିବା, ଭିଡ଼ିବା ଓ ଗଡ଼ାଇବା ପାଇଁ ବି ହାତୀଙ୍କୁ କାମରେ ଲଗାଯାଇଥାଏ । ଏଥିପାଇଁ କେତେକ ଜଙ୍ଗଲ ବିଭାଗରେ ହାତୀଙ୍କୁ ପୋଷା ଯାଇଥାଏ । ଗୋଟିଏ ବୟସ୍କ ହାତୀ ପ୍ରାୟ 540 କି.ଗ୍ରା. ଓଜନର କାଠ ବୋହି ନେଇପାରିଥାଏ ।

Digitized by srujanika@gmail.com

ହାତୀମାନେ ଯଥେଷ୍ଟ ବୁଦ୍ଧି ଓ ଦକ୍ଷତାର ସହ କାଠ ବୋହିବା କାମ ତୁଲାଇଥାନ୍ତି । ସୁରେଶ ବଇଦ ଆସାମ ଜଙ୍ଗଲରେ କାମ କରୁଥିବା ହାତୀଙ୍କ ବିଷୟରେ ଏକ ମଜା ଘଟଣା ଶୁଣାଇଛନ୍ତି । ସେ ଲେଖିଛନ୍ତି :

- ଗୋଟିଏ ଡିଜେଲ୍ ରେଳଗାଡ଼ି ଜାଗାଟିରେ ଚାରିଟି ଡବା ଛାଡ଼ିଦେଇ ଚାଲିଗଲା । ଏଥର ହାତୀମାନଙ୍କ କାମ ଆରମ୍ଭ ହେଲା । ପ୍ରଥମେ ଗୋଟିଏ ହାତୀ ଯାଇ ପଛଡ଼ବାଟିର ସାମନାରେ ଠିଆ ହେଲା । ତା'ପିଠିରେ ବସିଥିବା ମାହୁନ୍ତ ତାକୁ ସୂଚନା ଦେଲା । ଏଥର ହାତୀଟି ଡବାଟିର ଗୋଟିଏ ମୁଣ୍ଡରେ ଥିବା ଲୁହାକଣ୍ଟାଟିକୁ ବାହାର କରି ଆଣିଲା ଓ ଯଥେଷ୍ଟ ଦକ୍ଷତାର ସହ ଏହାପାଇଁ ଥିବା ଗୋଟିଏ କଣାରେ ଏହାକୁ ଲଗାଇଦେଲା । ତା' ପରେ ସେ ଆରମୁଣ୍ଡକୁ ଯାଇ ଆର କଣ୍ଟାଟିକୁ ବାହାର କରି କଣାରେ ଲଗାଇଦେଲା । ଦୁଇଟି ହାତୀ ୨ ମିଟର ଦୂରରେ କାଠଗଦା ନିକଟରେ ଠିଆ ହୋଇଥିଲେ । ଦୁହେଁ ଗୋଟିଏ କାଠଗଣ୍ଡିକୁ ଶୁଣ୍ଢରେ ବୋହି ବୋହି ଡବା ପାଖକୁ ଆଣିଲେ । ଡାହାଣ ପଟର ହାତୀଟି କାଠଗଣ୍ଡିର ଗୋଟିଏ ପଟକୁ ଧରି ଚୁପ୍‌ଚାପ୍ ଠିଆ ହେଲା । ବାଁ ପଟର ହାତୀଟି ଏକ ଗୋଲାକାର ପଥରେ ଘୂରିଗଲା ଯେପରି କାଠଟି ଡବାର ଧାରସହ ସମାନ୍ତର ରହିବ । ଏହା କରିସାରିବା ପରେ ସେ ହାତୀ ଦୁଇଟି କାଠଗଣ୍ଡିର ଉଭୟ ମୁଣ୍ଡକୁ ଧରିନେଇ ଏହାକୁ ତଳେ ରଖିଲେ ଯେପରି ଏହା ଡବାକୁ ଲମ୍ବ ଭାବରେ ଆଉଜି ରହିବ । ଏଥର ସେମାନେ ଗଣ୍ଡିଟିର ଉଭୟ ମୁଣ୍ଡକୁ ଧରି ଏହାକୁ ଡବା ମଧ୍ୟକୁ ଠେଲିବାରେ ଲାଗିଲେ । ସେମାନଙ୍କ ମାଡ଼ିର ଭଙ୍ଗୀରୁ ଜଣାପଡ଼ିଯାଉଥିଲା କେତେ ଶକ୍ତି ଓ ଦକ୍ଷତାର ସହ ସେମାନେ ଏହି ସୂକ୍ଷ୍ମ ଓ କଠିନ କାମଟି କରୁଥିଲେ । ଅତି ଧୀର ଭାବରେ ଇଞ୍ଚ ପରେ ଇଞ୍ଚ କରି ଗଣ୍ଡିଟିକୁ ସେମାନେ ଗଡ଼ାଇ ଚାଲିଲେ । ଶେଷରେ ଏହା ଡବାରେ ପୂରାପୂରି ଲଦି ହୋଇଗଲା । ଏଥର ହାତୀଗୁଡ଼ିକ ସନ୍ତୋଷରେ କାନ ହଲାଇଲେ । କିନ୍ତୁ କାମ ସରି ନ ଥିଲା । କାଠଗଣ୍ଡିଟିକୁ ଏପରି ରଖାଯିବା ଦରକାର ଥିଲା ଯେପରି ଏହା ତଳକୁ ଖସିପଡ଼ିବ ନାହିଁ । ଏଥିପାଇଁ ସେମାନେ ତାକୁ ଟିକେ ଏପଟ, ପୁଣି ଟିକେ ସେପଟ, ଏପରି କରି କରି ଦୁଇ ଲୁହା କଣ୍ଟା ସହିତ ଲଗାଇଦେଲେ । ସେହି କାଠଟିର ଓଜନ ଥିଲା ପ୍ରାୟ 4,320 କିଲୋଗ୍ରାମ୍ ।
- ଏହି କାମଟିରେ ଦୁଇଟିଯାକ ହାତୀ ପରସ୍ପର ଉପରେ ପୂରାପୂରି ନିର୍ଭରଶୀଳ ଥିଲେ । କାଠ ଗଣ୍ଡିଟିକୁ ଉପରକୁ ଉଠାଯିବା ସମୟରେ ଏହାକୁ ଭୂମିସହିତ ସମାନ୍ତରାଳ ରଖିବା ଜରୁରୀ ଥିଲା । ଏଥିରେ ସାମାନ୍ୟ ଭୁଲ ହେଲେ କାଠଟି ଖସିପଡ଼ି ଗୋଟିଏ ବା ଉଭୟ ହାତୀଙ୍କର ଆଗପାଦକୁ ଚୂନା କରି ଦେଇଥାନ୍ତା । ଏଥିପାଇଁ ଉଚ୍ଚମାନର ବୁଦ୍ଧି ଦରକାର ଥିଲା ।
- ଏହି ଏକା ପଦ୍ଧତିରେ ଗୋଟିଏ ପରେ ଗୋଟିଏ ହୋଇ ଆହୁରି ଦୁଇଟି କାଠଗଣ୍ଡିକୁ ଡବାରେ ଲଦାଗଲା । ଏଥର କାଠ ତିନୋଟିକୁ ଡବା ଭିତରେ ସଜାଇ ଦିଆଗଲା

Digitized by srujanika@gmail.com

ଓ ଲୁହା କଣ୍ଟା ଦୁଇଟି ମାଧ୍ୟମରେ ଏହାକୁ ସୁରକ୍ଷିତ ରଖାଗଲା ।

- ଏହିପରି କାଠ ଲଦିବା କାମରେ, ସମସ୍ତେ ମାନିବାକୁ ବାଧ ହେବେ ଯେ, ହାତୀଙ୍କ ସହିତ ଯନ୍ତ୍ରକୁ ବି ତୁଳନା କରାଯାଇନପାରେ । ଏହି କାମଟିରେ ଯେତିକି ବିବେଚନା ଲୋଡ଼ା ହୋଇଥାଏ, ତାହା ଯନ୍ତ୍ରଠାରେ ନଥାଏ । ଏହି କାମଟି ଆଶାତୀତ କମ୍ ସମୟରେ ବି କରାଯାଇପାରିଥିଲା । କାଠଗୁଡ଼ିକୁ ଡଙ୍ଗା ପାଖକୁ ବୋହି ନେବା ପାଇଁ ପ୍ରାୟ 45 ମିନିଟ୍ ଲାଗିଥିଲା । ଏହାକୁ ଡଙ୍ଗାରେ ଲଦିବା ପାଇଁ ପ୍ରାୟ ତିନିଘଣ୍ଟା ଲାଗିଥିଲା, ଅର୍ଥାତ୍ ଚାରି ଘଣ୍ଟାରୁ କମ୍ ସମୟ ମଧ୍ୟରେ ପ୍ରାୟ 5,200 କି.ଗ୍ରା. ଓଜନର କାଠକୁ ସଫଳତାର ସହ ଡଙ୍ଗାରେ ଲଦି ଦିଆଯାଇପାରିଥିଲା ।
- ମାହୁନ୍ତମାନେ ବି ଏହି କାମରେ ଯଥେଷ୍ଟ ଦକ୍ଷ ଥିଲେ । ହାତୀଙ୍କ ଉପରେ ତାଙ୍କର ପୂରା ନିୟନ୍ତ୍ରଣ ଥିଲା । ସେମାନଙ୍କ ମଧ୍ୟରୁ କେହି ବି ଥରେ ଆଙ୍କୁଶ ବ୍ୟବହାର କରି ନ ଥିଲେ । ଏପରି ଅନେକ ସମୟରେ ମୌଖିକ ଆଦେଶ ବି ଦରକାର ହୋଇ ନ ଥିଲା । ଅଧିକାଂଶ ସମୟରେ ସେମାନେ ଗୋଡ଼ରେ କେବଳ ଦାବି ଦେଉଥିଲେ । ଏହି ସୂକ୍ଷ୍ମ ଅଥଚ ବିରାଟ କାମଟିରେ ମାହୁନ୍ତମାନେ ଶତକଡ଼ା 60 ଭାଗ ପ୍ରଶଂସାର ଅଧିକାରୀ ଥିଲେ । ଏହି ହାତୀଗୁଡ଼ିକୁ ପୃଥିବୀର ସବୁଠୁ ଭଲ ହାତୀ ବୋଲି ଧରାଯାଉଥିଲା ।

ଉପରେ ବର୍ଣ୍ଣନା କରାଯାଇଥିବା କାମ ସମୟରେ ହାତୀଙ୍କର ଶୁଣ୍ଢ ଓ ମୁଣ୍ଡ ଉପରେ ସବୁଠୁ ବେଶି ଚାପ ପଡ଼ିଥାଏ । ଦାନ୍ତ ଉପରେ ଏତେ ଚାପ ପଡ଼େ ଯେ ପ୍ରତି ବର୍ଷ ଏହା ପ୍ରାୟ 15 ସେ.ମି. ହାରରେ ଘୋରି ହୋଇ ଯାଇଥାଏ । ଏହି କ୍ଷତିର ଭରଣା କରିବା ପାଇଁ ଏହି କାମରୁ ହାତୀଙ୍କୁ ବର୍ଷରେ ପ୍ରାୟ ଛଅମାସ ଛୁଟି ଦିଆଯାଇଥାଏ । ଏହି ଛଅ ମାସରେ ଦାନ୍ତ ପୁଣି ବଢ଼ିଯାଏ ଓ କ୍ଷତି ଭରଣା ହୋଇଯାଏ କିନ୍ତୁ; ଆଂଶିକ ଭାବରେ । ଏହି ହାରରେ 15 ବର୍ଷର କାମ ସରିବା ବେଳକୁ ଦାନ୍ତଗୁଡ଼ିକ ଘୋରି ହୋଇ ହୋଇ ବୋତାମ ଆକାରରେ ହୋଇଯାଇଥାଏ । ଏଥର ଏହି ହାତୀଙ୍କୁ ବୋହିବା କାମ ବଦଳରେ କାଠଗଣ୍ଡି ଭିଡ଼ିବା କାମରେ ଲଗାଯାଏ ।

ଜଙ୍ଗଲରେ କାଠଗଣ୍ଡିକୁ ଟେକିବା, ଭିଡ଼ିବା ବା ଲଦିବା କାମ ପାଇଁ ମାଈ ହାତୀଙ୍କ ଅପେକ୍ଷା ଅଣ୍ଡିରା ହାତୀଗୁଡ଼ିକ ଅଧିକ ଉପଯୋଗୀ ହୋଇପାରିଥାନ୍ତି । କାରଣ ସେମାନେ ଅଧିକା ଟାଣୁଆ ହୋଇଥାନ୍ତି ।

ହାତୀମାନଙ୍କୁ ତିନି ଘଣ୍ଟାରୁ ବେଶି ସମୟ ଯାଏଁ କଠିନ କାମରେ ଲଗାଯାଇ ନ ଥାଏ । କିନ୍ତୁ ଉତ୍ତାପ ବେଶି ନ ଥିବା ସମୟରେ ସାଧାରଣ ସୁସ୍ଥ ହାତୀମାନେ ସକାଳେ ଓ ସନ୍ଧ୍ୟାରେ ପ୍ରାୟ ଛଅ, ସାତ ଘଣ୍ଟା ପାଇଁ କାମ କରିପାରିଥାନ୍ତି । ହାତୀମାନଙ୍କୁ ଦିନରେ 16 କି.ମି.ରୁ ବେଶି ଦୂର ଯାଏଁ ଭାର ବୁହାଇବା ଉଚିତ ନୁହେଁ । ସୂର୍ଯ୍ୟ କିରଣରୁ ସେମାନଙ୍କୁ ଯତ୍ନର ସହ ଦୂରେଇ ରଖିବା ଉଚିତ ।

ପୋଲ ତିଆରି ସମୟରେ ହାତୀମାନେ ଯଥେଷ୍ଟ ଉପଯୋଗୀ ହୋଇପାରିଥାନ୍ତି ।

Digitized by srujanika@gmail.com

ସେମାନେ ମୋଟା ମୋଟା କାଠଗଣ୍ଡି ଓ ଲୁହା ଖଣ୍ଡକୁ ଜାଗାଟି ଯାଏଁ ବୋହି ନେଇ ପାରନ୍ତି । ସେମାନେ ନଦୀ ଭିତରେ ବି ବିଭିନ୍ନ ଜଞ୍ଜାମାଳକୁ ଠେଲି ବା ଭିଡ଼ି ପହଞ୍ଚାଇ ଦେଇପାରନ୍ତି । ଗୋଟିଏ ହାତୀ ରୋଡ଼ରୋଲରକୁ ବି ଅନାୟାସରେ ଭିଡ଼ିପାରିଥାଏ ।

ଆଜିକାଲି ପେଟ୍ରୋଲ୍ ବା ଡିଜେଲ୍ ଚାଳିତ ଗାଡ଼ି ଦ୍ୱାରା ଜଙ୍ଗଲରୁ କାଠ ବୁହାଯାଉଛି । ତେଣୁ ହାତୀଙ୍କ ବ୍ୟବହାର କମି ଚାଲିଛି । ଏହି ଦିଗରେ ମିଆଁମାର୍ ଏକ ଉଦାହରଣ ଅଟେ । ସେଠାକାର ଟିକ୍ କାଠ ଜଙ୍ଗଲରେ ହାତୀଙ୍କ ବ୍ୟବହାର 1934 ମସିହାରେ 6,000 ଥିଲାବେଳେ 1964 ବେଳକୁ ଏହା 1,500କୁ ଖସିଆସିଥିଲା ।

1968 ମସିହା ଡିସେମ୍ବର ମାସରେ ଗୋଟିଏ ଖବର ପ୍ରକାଶ ପାଇଥିଲା ଯେ, ଥାଇଲାଣ୍ଡରେ ଏବେ ବି ପୋଲିସ୍‌ଙ୍କ କାମରେ ହାତୀକୁ ବ୍ୟବହାର କରାଯାଉଛି । ଲେଖାଥିଲା ଯେ, ଉତ୍ତର-ପୂର୍ବ ଥାଇଲାଣ୍ଡର ସୁରିନ୍ ଠାରେ ହାତୀଙ୍କର ଏକ ବାର୍ଷିକ ସମାବେଶ ଦେଖିବା ପାଇଁ 20,000ରୁ ବେଶି ଲୋକ ରୁଣ୍ଡ ହୋଇଥିଲେ । ସେନାବାହିନୀର କର୍ମଚାରୀମାନେ ଏହି ସମୟରେ ହାତୀ ଉପରେ ବସି ଏହି ଭିଡ଼କୁ ନିୟନ୍ତ୍ରଣ କରିଥିଲେ ।

ହାତୀମାନଙ୍କର ଯଥେଷ୍ଟ ଯତ୍ନ ଲୋଡ଼ା ହୋଇଥାଏ । ତାକୁ ଭଲ ରୂପେ ଘଷି ମାଜି ଗାଧୋଇବାକୁ ହୁଏ ଓ ଯଥେଷ୍ଟ ଖାଦ୍ୟ ଖୁଆଇବାକୁ ହୁଏ । ଗୋଟିଏ ହାତୀର ଦେଖାଚାହାଁ କରିବା ପାଇଁ ଦୁଇଜଣ ଲୋକ ଲୋଡ଼ା ହୋଇଥାନ୍ତି । କିନ୍ତୁ 20 ବର୍ଷରୁ କମ୍ ବୟସର ଗୋଟିଏ ହାତୀ ପାଇଁ ଜଣେ ଲୋକ କାମ ତୁଲାଇ ପାରିବ । ଜଣେ ହାତୀକୁ ସ୍ନେହର ସହିତ ଯତ୍ନ ନେଇପାରିବ, ହାତୀ ବି ତା'ର ସେତିକି ଉପକାର କରିଥାଏ ।

ହାତୀ ଓ ଅନ୍ୟ ପୋଷା ମନାଯାଉଥିବା ତୃଣଭୋଜୀ ପଶୁଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ଫରକ ହେଉଛି ହାତୀ ଜଙ୍ଗଲକୁ ପଳାଇବାର ଇଚ୍ଛାକୁ କେବେ ବି ରୋକି ପାରେ ନାହିଁ । ଏପରିକି ପୋଷା ହାତୀଙ୍କ ଛୁଆଙ୍କର ବି ଯେ କୌଣସି ମୁହୂର୍ତ୍ତରେ ଏଥିପାଇଁ ଇଚ୍ଛା ହୋଇପାରେ । ତାଙ୍କର ଏହି ଇଚ୍ଛାକୁ ଦବାଇ ରଖିବା ପାଇଁ ହାତୀକୁ ସବୁବେଳେ ଭଦ୍ର ଓ ସ୍ନେହପୂର୍ଣ୍ଣ ବ୍ୟବହାର ଶିଖାଇବାକୁ ପଡ଼ିଥାଏ । ସେମାନଙ୍କୁ କୌଣସି କାମରେ ପଠାଯିବା ଆଗରୁ ବା କାମରୁ ଫେରିବା ପରେ ସେମାନଙ୍କ ଦେହର ବିଭିନ୍ନ ଜାଗାରେ କାଳେ କୌଣସି କ୍ଷତ ହୋଇଥିବ ବା ଆଘାତ ଲାଗିଥିବ, ତାହାକୁ ଯାଞ୍ଚ କରି ଦେଖିବାକୁ ପଡ଼ିଥାଏ ।

ହାତୀକୁ ଦୁଇ ପ୍ରକାରର ଉପାୟରେ ସଜାଇ କାମରେ ଲଗାଯାଇଥାଏ । ଟଣା ଭିଡ଼ା କାମ କରାଯିବାର ଥିଲେ, ହାତୀଙ୍କ ପିଠିରେ ଅଖା ମୁଚୁଳା ବାନ୍ଧି ଦିଆଯାଏ । ଏହାର ଉପରେ ଦୁଇଟି କାଠପଟା ବନ୍ଧାଯାଏ । ଏହି ପଟାରେ ଲୁହା ଶିକୁଳି ବାନ୍ଧିବା ପାଇଁ କଣାସବୁ ରହିଥାଏ । ସାମନା ପଟେ ଗୋଟିଏ ଚମଡ଼ା ପଟି ଦ୍ୱାରା ଶିକୁଳିଗୁଡ଼ିକୁ ହାତୀ ଦେହରେ ସୁରକ୍ଷିତ ରଖାଯାଏ । ହାତୀ ଦେହରେ ଲାଗି ରହିଥିବା ଶେଯଟି ହାତୀ ଦେହରେ ଘଷି ନ ହେବା ପାଇଁ ଏହାର ମୂଳରେ କେତେକ ତେଲିଆ ଜିନିଷ ବୋଳି ଦିଆଯାଇଥାଏ ।

ହାତୀର ଆଗଗୋଡ଼କୁ ଲୁହା ଶିକୁଳିରେ ବାନ୍ଧି ତାକୁ ଗଛ'ର ଖୁଣ୍ଟରେ ବନ୍ଧାଯାଇଥାଏ । ତାଲିମ ଦିଆଯାଉଥିବା ଛୋଟ ହାତୀଙ୍କ ପାଇଁ ବେତର ଯୁଆଳୀ ବ୍ୟବହାର କରାଯାଇଥାଏ ।

Digitized by srujanika@gmail.com

କେତେକ କ୍ଷେତ୍ରରେ ହାତୀଙ୍କ ଆଗପଟର ଗୋଟିଏ ଗୋଡ଼ରେ ଲମ୍ବା ଶିକୁଳି ବି ବନ୍ଧାଯାଇଥାଏ ।

ହାତୀଶାଳର ଚଟାଣକୁ ସାଧାରଣତଃ ଇଟାରେ ତିଆରି କରାଯାଇଥାଏ ଓ ଏହାକୁ ଅପେକ୍ଷାକୃତ ଉଚ୍ଚା କରାଯାଇଥାଏ, ଯେପରି ପାଣି ଆଦି ତରଳ ପଦାର୍ଥ ତଳ ଆଡ଼କୁ ଗଡ଼ିଯିବ । ଛାତକୁ ସାଧାରଣତଃ ଟାଳ ବା ଟାଇଲ୍‌ରେ ଛପର କରାଯାଇଥାଏ । ଦେଖିବାକୁ ପଡ଼େ ଯେପରି ହାତୀଙ୍କ ଉପରେ ସୂର୍ଯ୍ୟକିରଣ ସିଧା ପଡ଼ିବ ନାହିଁ ।

ହାତୀଙ୍କ ପାଇଁ ଗାଧୋଇବା ଏକ ଗୁରୁତ୍ୱପୂର୍ଣ୍ଣ କାମ ହୋଇଥାଏ । ସେମାନେ ପାଣିରେ ଖେଳି ଖେଳି ଗାଧୋଇବାକୁ ଖୁବ୍ ଭଲ ପାଇଥାନ୍ତି । ହାତୀଟିଏ ଯେତେବେଳେ ପାଣି ଭିତରେ ପଶେ, ସେ ସେଥିରେ ବସିଯାଏ, ଯେପରି ତା'ର କେବଳ ଶୁଣ୍ଢ ଓ ପିଠିର ଅଳ୍ପ ଭାଗ ହିଁ ପାଣି ଉପରକୁ ଦେଖାଯାଇଥାଏ । ତା' ପରେ ମାହୁନ୍ତ ତା' ଦେହସାରା ଘଷିବାରେ ଲାଗିଯାଏ ।

ହାତୀଙ୍କୁ ଦିନରେ ଦୁଇଥର ଗାଧୋଇବାକୁ ପଡ଼ିଥାଏ – ରାତି ସାରା ଜଙ୍ଗଲରେ ଚରି ଯେତେବେଳେ ସକାଳେ ସେମାନେ ଘରକୁ ଫେରିଆସନ୍ତି, ସକାଳ ଛଅଟା ବେଳେ ଥରେ ଓ ପୁଣି ଅପରାହ୍ଣରେ ସବୁ କାମ ସାରି ଫେରିବା ପରେ ପାଞ୍ଚଟା ବେଳେ ପୁଣି ଥରେ ।

ବଣୁଆ ହାତୀମାନେ ଘଣ୍ଟା ଘଣ୍ଟା ଧରି ପାଣିରେ ରହିବାକୁ ଭଲ ପାଆନ୍ତି । ସେମାନେ ଶୁଣ୍ଢରେ ଥରକୁ ଥର ପାଣି ଭର୍ତ୍ତି କରନ୍ତି ଓ ଏହାକୁ ଦେହ ସାରା ପକାନ୍ତି । ସେମାନେ ପୋଖରୀ ବା ନଦୀରୁ କାଦୁଅ, ପଙ୍କ ଆଦି ବାହାର କରି ଦେହରେ ପକାନ୍ତି । ଏହିପରି କାଦୁଅ ବୋଳିବା ଦ୍ୱାରା ସେମାନଙ୍କ ଦେହ ଅନେକ ସମୟ ଯାଏଁ ଥଣ୍ଡା ରହେ । ବେଳେ ବେଳେ ସେମାନେ ପାଣିରେ ଅନେକ ସମୟ ଯାଏଁ ପଡ଼ିରହନ୍ତି । ତାଙ୍କର ଶୁଣ୍ଢର ଅଗ ଭାଗଟି ହିଁ ପାଣି ଉପରକୁ ରହିଥାଏ । ଏହା ମାଧ୍ୟମରେ ସେମାନେ ପ୍ରଶ୍ୱାସ ନେଇପାରିଥାନ୍ତି ।

ହାତୀ ଛୁଆ ବି ପାଣିରେ ଖେଳିବାକୁ ଖୁବ୍ ଭଲ ପାଆନ୍ତି । ଆମେ ଲୁଗା ଧୋଇବା ପରି ମା' ହାତୀମାନେ ତାଙ୍କୁ ଶୁଣ୍ଢରେ ଉଠାଇ ଧରି ପାଣି ଉପରେ ଏପାଖ ସେପାଖ ହଲାଇଥାନ୍ତି । ଏକଦା ମେ' ମାସର ଅତିଶୟ ଗରମ ସମୟରେ ମୁଁ ଗୋଟିଏ ହାତୀପଲକୁ ପାଣି ଆଡ଼କୁ ଯାଉଥିବାର ଦେଖିଲି । ସେମାନେ ପ୍ରଥମେ ଗୋଟିଏ ଛୋଟିଆ ପୋଖରୀ ପାଖକୁ ଆସିଲେ । ହାତୀଛୁଆଟିଏ ଏଠାରେ ଅଳ୍ପ ପାଣି ପିଇଲା । ତା' ପରେ ସେମାନେ ଆଗକୁ ଚାଲିଲେ । ଏଥର ସେମାନେ ଗୋଟିଏ ବଡ଼ ପୋଖରୀ ପାଖରେ ପହଞ୍ଚିଲେ । ଏଠାରେ ଦୁଇଟି ହାତୀ ଛୁଆ ପାଣିରେ ପଶିଲେ ଓ ଭଲରେ ଗାଧୋଇଲେ । ବଡ଼ ହାତୀମାନେ ସେଠାରେ ଗାଧୋଇଲେ ନାହିଁ । କାରଣ ସେଠାରେ ପାଣି ମାତ୍ର ତାଙ୍କର ପେଟଯାଏଁ ହିଁ ପହଞ୍ଚୁଥିଲା । ସେମାନେ ପାଣି ଭିତରେ ଚାଲି ଚାଲି ପୋଖରୀ ସେପାଖକୁ ଚରିବା ପାଇଁ ଚାଲିଗଲେ । ପାଖରେ ଥିବା ଆଉ ଏକ ପୋଖରୀରେ ପ୍ରାୟ ଡଜନେ ହେବ ହାତୀ ପରସ୍ପର ଦେହରେ କାଦୁଅ ବୋଳି ହୋଇ ଖେଳିବାରେ ଲାଗିଥାନ୍ତି । ସେମାନେ ସେଠାରେ ପ୍ରାୟ ଦୁଇ ଘଣ୍ଟା କାଳ ମନଖୁସିରେ ଗାଧୋଇଲେ । ପରସ୍ପରକୁ କାଦୁଅ ବୋଳିବାରେ ହାତୀମାନେ ବହୁତ ମଜା ପାଆନ୍ତି ।

Digitized by srujanika@gmail.com

ଅପରାହ୍ନରେ ଆଉ ଏକ ପୋଖରୀରେ ମୁଁ ସେହି ହାତୀ ପଲକୁ ହିଁ ଗାଧୋଉଥିବାର ଦେଖିଲି । ସେମାନେ ସମସ୍ତେ ନିଜ ଶୁଣ୍ଢ ଦ୍ୱାରା ପାଣିକୁ ଘାଣ୍ଟି ଚକଟି ପୋଖରୀଯାକର ପାଣିକୁ ଗୋଳିଆ କରି ଦେଉଥିଲେ ।

ଆମେ ଗୋଟିଏ ମସ୍ତ ହୋଇଥିବା ହାତୀକୁ ଦୁଇ ତିନିଦିନ ଯାଏଁ ଅନୁଧ୍ୟାନ କରିଥିଲୁ । ସେ ଏବେ ଶାଳ ଜଙ୍ଗଲରୁ ବାହାରି ଆସିଥାଏ । ମସ୍ତ ରସରେ ତା ମୁହଁଟା ପୂରା କୁତ୍ସିତ ହୋଇଯାଇଥାଏ । ଅନ୍ୟ ହାତୀଙ୍କ ପ୍ରତି ସେ ଅତି ବେଖାତିର ବ୍ୟବହାର ଦେଖାଉଥାଏ । ସେ ନିଜେ ନିଜେ ସିଧା ନଦୀ ଆଡ଼କୁ ଚାଲିଲା । ସେ ସମୟରେ ଅନ୍ୟ ହାତୀସବୁ ଜଙ୍ଗଲରେ ଥାଆନ୍ତି । ସେ ପାଣି ଭିତରକୁ ପଶିଲା । ଅଧଘଣ୍ଟା ଧରି ସେ ପାଣିରେ ଭଲ କରି ଗାଧୋଇଲା । ପାଣି ବାହାରକୁ ଆସିଲାବେଳକୁ ସେ ପୂରା ସତେଜ ଓ ଥଣ୍ଡା ଥିଲା ପରି ଦେଖାଯାଉଥିଲା । ତା' ମୁହଁରୁ ମସ୍ତ ରସ ପୂରା ଧୋଇ ହୋଇ ଯାଇଥିଲା । ତା'ପରେ ସେ ଶୁଣ୍ଢରେ ବାଲି ନେଇ ତା ଦେହ ସାରା ପକାଇଲା । ଏଥର ସେ ନଇଁପଡ଼ି ପୁଣି ଏହା କଲା ଓ ନଦୀବାଲି ଭିତରେ ନିଜର ଦୁଇଟାଯାକ ଦାନ୍ତ ପୂରାଇଦେଲା । ସେ ମୁଣ୍ଡଟିକୁ ଖୁବ୍ ଜୋର୍‌ରେ ହଲାଇଲା । ସେ ଯେତେବେଳେ ଉଠିଲା ସେତେବେଳକୁ ତା ମୁହଁରୁ ପୁଣି ମସ୍ତ ରସ ଝରି ଚାଲିଥାଏ ।

ଉଭୟ ଏସୀୟ ଓ ଆଫ୍ରିକୀୟ ହାତୀମାନେ ଭଲ ପହଁରି ଜାଣନ୍ତି । ସେମାନେ ଘଣ୍ଟାକୁ ପ୍ରାୟ 1.6 କି.ମି. ବେଗରେ ପହଁରି ଯାଆନ୍ତି । ଢାକ୍କା ଓ ବାରାକ୍‌ପୁର ମଧ୍ୟବର୍ତ୍ତୀ ଇଲାକାରେ ଥିବା ଗଙ୍ଗା ଓ ବ୍ରହ୍ମପୁତ୍ର ନଦୀର ମିଳିତ ସ୍ରୁଅରେ ହାତୀମାନେ ଏକାଥରକେ ଛଅ ଘଣ୍ଟା ଧରି ପହଁରି ଥିବାର ଲକ୍ଷ୍ୟ କରାଯାଇଛି । ଏଠାରେ ପାଣି ଯଥେଷ୍ଟ ଗଭୀର । ହାତୀଙ୍କ ଗୋଡ଼ ପାଣି ତଳକୁ ଛୁଇଁ ପାରି ନ ଥାଏ । ଥରେ ତା'ର ଉଭୟ ପଛଗୋଡ଼କୁ ବାନ୍ଧି ଦିଆଯାଇଥିବା ଏକ ହାତୀ ଗୋଟିଏ ନଦୀର 300 ମିଟର ଯାଏଁ ଦୂରତା ପହଁରି ପହଁରି ଚାଲିଯାଇଥିଲା । ହାତୀମାନେ ପହଁରିବା ସମୟରେ ପାଣି ଭିତରେ ନିଜର ପୂରା ଦେହଟିକୁ ବୁଡ଼ାଇ ରଖନ୍ତି । କେବଳ ଶୁଣ୍ଢଟି ହିଁ ଉପରକୁ ଦେଖାଯାଇଥାଏ । ଆଫ୍ରିକାର ଆଦିବାସୀମାନେ ଏକ ନୂଆ ଉପାୟରେ ହାତୀ ଶିକାର କରିଥାନ୍ତି । ହାତୀ ପହଁରୁଥିବା ସମୟରେ ସେମାନେ ଉପରକୁ ଦିଶୁଥିବା ଶୁଣ୍ଢଟିକୁ ଲକ୍ଷ୍ୟ କରନ୍ତି । ସେହି ଅବସ୍ଥାରେ ସେମାନେ ତାକୁ ବର୍ଚ୍ଛା ସାହାଯ୍ୟରେ ଆକ୍ରମଣ କରନ୍ତି । ଯେହେତୁ ହାତୀ ପାଣିରେ ପଶିବାକୁ ଭଲ ପାଏ ବୋଲି ଜଣାପଡ଼ିଛି । ତେଣୁ ହାତୀ ପିଠିରେ ବସି ନଦୀ ପାର ହେବାରେ କୌଣସି ବିପଦ ନ ଥାଏ । ଅବଶ୍ୟ ଏଥିରେ ଗୋଟିଏ ବିପଦ ବି ଅଛି । ହାତୀଟି ମଝି ନଈରେ ହଠାତ୍ ପାଣିରେ ପୂରା ବୁଡ଼ିଯାଇ ନଦୀ ମଝିରେ କିଛି ସମୟ ବୁଡ଼ି ରହିବାକୁ ଚାହିଁପାରେ । ଏହି ସମୟରେ ତା'ଠୁ କାମ ଆଦାୟ କରିବା ପାଇଁ ହେଲେ ତା' ମୁଣ୍ଡକୁ ଅାଙ୍କୁଶରେ ଲଗାତାର ଆଘାତ କରିବାକୁ ପଡ଼ିଥାଏ ।

Digitized by srujanika@gmail.com

6

# ହାତୀ ଧରା ଓ ତାଲିମ

**ହାତୀ ଧରା**

ହାତୀଙ୍କୁ ଧରିବା ଓ ତାଲିମ ଦେବା କାମ ପଞ୍ଚମ ଶତାବ୍ଦୀ ଖ୍ରୀଷ୍ଟାବ୍ଦରୁ ଚାଲି ଆସୁଥିବାର ପ୍ରମାଣ ସବୁ ରହିଛି । ଏ ବିଷୟରେ ମେଘାସ୍ଥିନିସ୍ (ଖ୍ରୀ.ପୂ. 200), ଷ୍ଟ୍ରାବୋ (130 ଖ୍ରୀଷ୍ଟାବ୍ଦ) ଓ ଇଣ୍ଡିକୋ ପ୍ଲାଏଷ୍ଟେସ୍ (600 ଖ୍ରୀଷ୍ଟାବ୍ଦ)ଙ୍କ ଲେଖାଗୁଡ଼ିକରୁ ସୂଚନା ମିଳୁଛି । ସତରଶହ ଶତାବ୍ଦୀରେ ହାଇଦର୍ ଅଲ୍ଲୀ ଭାରତରେ ଏହି କାମଟି ଆରମ୍ଭ କରିବାର ମୂଳଦୁଆ ପକାଇଥିଲେ । ସେ ହାତୀଙ୍କ ସଂଖ୍ୟା ବଢ଼ାଇ ନିଜ ସେନାବାହିନୀର କ୍ଷମତା ବଢ଼ାଇବାକୁ



Digitized by srujanika@gmail.com

ଚାହିଁଥିଲେ । ତେଣୁ ସେ ମହୀଶୂର (ଆଜିର କର୍ଣ୍ଣାଟକ) ଠାରୁ 24 କି.ମି. ଦୂର କକନ୍‌କୋଟ୍ ଜଙ୍ଗଲରୁ ହାତୀ ଧରିବା ଅଭିଯାନ ଚଳାଇଥିଲେ, ଏହି ଶତାବ୍ଦୀର ଆରମ୍ଭ ଯାଏଁ ହାତୀ ଧରିବା ଏକ ବେଶ୍ ଲାଭଜନକ କାମ ଥିଲା । ତା' ପରେ ଏହା କ୍ରମଶଃ କମିବାରେ ଲାଗିଲା ।

ଆଗରୁ ପ୍ରତିବର୍ଷ ଆସାମ, ବଙ୍ଗଳା ଓ ପଶ୍ଚିମ ଘାଟ ପର୍ବତମାଳା ଅଞ୍ଚଳରେ ବଣୁଆ ହାତୀଙ୍କୁ ଜଙ୍ଗଲରୁ ଧରିବା ପାଇଁ ବିଭିନ୍ନ ଚେଷ୍ଟା ଚଳାଯାଉଥିଲା । ବର୍ଷା ଋତୁର ଶେଷରେ ଏହି କାମ ଆରମ୍ଭ କରାଯାଉଥିଲା । ଏଥିପାଇଁ ତଳଲିଖିତ ଉପାୟଗୁଡ଼ିକ ଅବଲମ୍ବନ କରାଯାଉଥିଲା ।

- ଭୂମିରେ ଗାତ ଖୋଳି ହାତୀଙ୍କୁ ସେଥିରେ ଗଳେଇ ଦିଆଯାଉଥିଲା ।
- ଖୁଣ୍ଟି ଘର ବା ଖେଦାକୁ ଅଡ଼ାଇନେବା; ଏବଂ
- ଫାଶ ପକାଇ ଧରିବା ।

ଭୂମିରେ ଗାତ ଖୋଳି ହାତୀଙ୍କୁ ସେଥିରେ ପକାଇ ଧରିବା ପଦ୍ଧତିଟିରେ ସବୁଠୁ କମ୍ ଖର୍ଚ୍ଚ ହୋଇଥାଏ; ତେଣୁ ଏହାକୁ ଅଧିକାଂଶ କ୍ଷେତ୍ରରେ ଅବଲମ୍ବନ କରାଯାଉଥିଲା । ହାତୀମାନେ ସବୁବେଳେ ଯା'ଆସ କରୁଥିବା ବାଟରେ ବଡ଼ ଗାତ ଖୋଳି ଦିଆଯାଉଥିଲା । ଏହି ଗାତଗୁଡ଼ିକ 4 – 5 ମିଟର ଗଭୀର ଉପର ଭାଗରେ 4 ମିଟର ଲମ୍ବା ଓ 4 ମିଟର ଓସାରିଆ କିନ୍ତୁ ତଳେ ଏହାର ଲମ୍ବା ଓ ଓସାର 3 ମିଟର ରହୁଥିଲା । ହାତୀ ଏଥିରେ ପଡ଼ି ଖଣ୍ଡିଆ ଖାବରା ହୋଇଯିବାର ସମ୍ଭାବନା ଥିବାରୁ ଏହି ଗାତରେ ଗଛ ଡାଳ ଓ ଘାସ ପକାଇ 2 ମିଟର ଉଚ୍ଚା କରି ଦିଆଯାଉଥିଲା । ଏହା ସତ୍ତ୍ୱେ କେତେକ କ୍ଷେତ୍ରରେ ହାତୀମାନେ ଗୁରୁତର ଆଘାତ ପାଉଥିଲେ । ଥରେ ଏହି ଗାତରେ ପଡ଼ିଗଲା ପରେ ଏଥିରେ ଏପଟସେପଟ ହେବା ବା ବାହାରିଆସିବାର କୌଣସି ସୁଯୋଗ ମିଳୁନଥିଲା । ଗାତଗୁଡ଼ିକୁ ହାତୀଙ୍କ ଆଖିରୁ ଲୁଚାଇବା ପାଇଁ ଏହା ଉପରେ ବାଉଁଶ ଟାଞ୍ଚ ଓ ମାଟି ଦେଇ ଦିଆଯାଉଥିଲା । ଏହା ଉପରେ ଘାସ ଓ ପତ୍ର ବିଛେଇ ଦିଆଯାଉଥିଲା ।

ପ୍ରତିଦିନ ଲୋକମାନେ ଯାଇ ଏହି ଗାତକୁ ଯାଞ୍ଚ କରିଦେଇ ଆସନ୍ତି । ହାତୀଟିଏ ଯେତେବେଳେ ଏଥିରେ ଗଳିପଡ଼େ, ସେ ପ୍ରଚଣ୍ଡ ଭାବେ ଗର୍ଜନ କରେ । ଏହା 1 କି.ମି. ଦୂର ଯାଏଁ ବି ଶୁଭିଥାଏ । ଏଥର ଅଭିଜ୍ଞ ମାହୁନ୍ତମାନେ ନିଜର ଦଳବଳ ନେଇ ଜାଗାଟିରେ ପହଞ୍ଚନ୍ତି । ସମସ୍ତେ ଚାରିପଟୁ ଘେରି ହାତୀଟି ଉପରକୁ ଦଉଡ଼ି ଫାଶ ଫିଙ୍ଗନ୍ତି ଯେପରି ତା'ର ବେକ ଓ ପଛ ଗୋଡ଼ରେ ଏହା ବାନ୍ଧି ହୋଇଯିବ । ଏଥର ଗାତ ଭିତରକୁ ବଡ଼ ବଡ଼ କାଠଗଣ୍ଡି ପକାଯାଏ, ଯେପରି ହାତୀଟି ଏହା ଉପର ଦେଇ ଉପରକୁ ଉଠି ଆସିପାରିବ । ଲୋକମାନେ ମିଶି ବନ୍ଦୀ ହାତୀଟିକୁ ଭିଡ଼ିଭିଡ଼ି ଗାତ ବାହାରକୁ ଆଣନ୍ତି ଓ ତାକୁ ପାଖ ନଦୀ ବା ଝରଣା ପାଖକୁ ନିଅନ୍ତି । ଏହାପରେ ତାକୁ କାଠଗଡ଼ାକୁ ନେଇ ସେଠାରେ ତାକୁ ତାଲିମ ଦିଆଯାଏ । ଏହି କାଠଗଡ଼ାଟି ପ୍ରାୟ 6 ମିଟର ଓସାରିଆ ହୋଇଥାଏ ଓ ଚଟାଣଟି ଟାଣୁଆ ଭାବରେ ତିଆରି ହୋଇଥାଏ ।

Digitized by srujanika@gmail.com

ଲୋକମାନେ ନିୟମିତ ଭାବେ ମଝିରେ ମଝିରେ ଆସି ବନ୍ଦୀ ହାତୀଟିର ଖିଆପିଆ ପ୍ରତି ଦୃଷ୍ଟି ରଖନ୍ତି । ଧୀରେ ଧୀରେ ହାତୀଟି ନିଜର ଏହି ପରିସ୍ଥିତିକୁ ଗ୍ରହଣ କରିନିଏ ।

ପ୍ରାଚୀନ କାଳରେ ହାତୀର ମନୋବଳ ଭାଙ୍ଗିଦେବା ପାଇଁ ତାକୁ ଅନେକ ଦିନ ଯାଏଁ ଭୋକିଲା ଛାଡ଼ି ଦିଆଯାଉଥିଲା ଯେପରି ସେ ଦୁର୍ବଳ ହୋଇଯିବ । ପାଞ୍ଚ ବର୍ଷରୁ ଛୋଟ ହାତୀ ପ୍ରାୟ 10 ଦିନ ମଧ୍ୟରେ ମାହୁନ୍ତ ଦ୍ୱାରା ଖୁଆଯିବା ରୀତି ସହ ଅଭ୍ୟସ୍ତ ହୋଇଯାଇଥାନ୍ତି । ସେତେବେଳକୁ ଆଉ ଗୋଟିଏ ବା ଦୁଇଟି ପୋଷା ହାତୀ ସହିତ ତାକୁ ଚରାଇବାକୁ ନିଆଯାଇପାରେ । 18ରୁ 20 ବର୍ଷ ବୟସ୍କ ହାତୀ ଭଲରୂପେ ପୋଷା ମାନିବାକୁ ପ୍ରାୟ ମାସେ ସମୟ ନେଇଥାନ୍ତି । ପୂରା ବଡ଼ ହାତୀମାନେ ପୂରା ପୋଷାମାନି ବିଶ୍ୱାସର ସହ ମାହୁନ୍ତର କାମ କରିବା ପାଇଁ ପ୍ରାୟ 18 ମାସ ସମୟ ନେଇଥାନ୍ତି । ହାତୀର ଶୁଣ୍ଢଟି ଏକ ଅତି ସମ୍ବେଦନଶୀଳ ଅଙ୍ଗ ଅଟେ । ଶୁଣ୍ଢକୁ ଥାପୁଡ଼ାଇ ଦେଲେ ହାତୀଟିଏ ଯଦି ଠିଆ ହୋଇଯାଏ,ତେବେ ଏଥିରୁ ଜଣାପଡ଼ିଯିବ ଯେ ସେ ଭଲରୂପେ ପୋଷା ମାନି ସାରିଛି ।

ତାମିଲନାଡୁରେ 50 ବର୍ଷରୁ ଅଧିକ ବୟସ୍କ ହାତୀଙ୍କୁ ଧରାଯାଏ ନାହିଁ । ଯଦି ବି ଏପରି ବୟସ୍କ ହାତୀଟିଏ ଧରାପଡ଼ିଯାଏ, ଶିକାରୀମାନେ ସାଙ୍ଗେ ସାଙ୍ଗେ ତାକୁ ଛାଡ଼ିଦିଅନ୍ତି । ଛୋଟ ହାତୀଛୁଆଙ୍କୁ ବି ସେହିପରି ଧରାଯାଏ ନାହିଁ । ଆର୍ଥିକ ଦିଗଟି ଏହାର ମୂଳ କାରଣ ଅଟେ; କାରଣ 15 ବର୍ଷର ନ ହେଲା ଯାଏଁ ସେ ବିଶେଷ କିଛି ଭାର ଉଠାଇପାରିବ ନାହିଁ । ଅଥଚ ସେତିକି ବଡ଼ ହେଲା ଯାଏଁ ତାକୁ ଖୁଆଇ ପିଆଇ ତା'ର ଯତ୍ନ ନେବାକୁ ପଡ଼ିବ । 18 ରୁ 25 ବର୍ଷ ବୟସ୍କ ହାତୀଙ୍କୁ ଧରିବାକୁ ହାତୀଙ୍କର ଉପଯୁକ୍ତ ବୟସ ବୋଲି ବିଚାର କରାଯାଇଥାଏ ।

*ରାମାୟଣ*ରେ ବି ଗାତ ଖୋଳି ହାତୀ ଧରାଯିବାର ଉଦାହରଣ ଦେଖିବାକୁ ମିଳେ । ବାଲ୍ମୀକି ବର୍ଣ୍ଣନା କରିଛନ୍ତି ଯେ ଲୋକମାନେ ମଶାଲ ଧରି ହାତୀମାନଙ୍କୁ ଗୋଡ଼ାଉଥିଲେ ଆଗରୁ ଗାତ ଖୋଳାଯାଇ ଏହା ଉପରେ ଡାଳ, ପତ୍ର, ଘାସ ବିଛାଇ ଦିଆଯାଉଥିଲା । ହାତୀଙ୍କୁ ତଡ଼ି ନେଇ ସେହି ଗାତରେ ପକାଇ ଦିଆଯାଉଥିଲା ।

## ଖେଦା

*ଖେଦା* ହେଉଛି ବଣୁଆ ହାତୀଙ୍କୁ ଧରାଯିବାର ସବୁଠୁ ଜଣାଶୁଣା ପଦ୍ଧତି । ଏଥିରେ ଦଳେ ହାତୀଙ୍କୁ ତଡ଼ିନେଇ ଖୁଣ୍ଟିଘରେ *ଖେଦା*ରେ ପୂରାଇ ଦିଆଯାଏ ଓ ତା'ପରେ ସେମାନଙ୍କୁ ଧରାଯାଏ । ଏହି *ଖେଦା* ଶବ୍ଦଟିର ଅର୍ଥ 'ଖେଦିବା' ବା 'ତଡ଼ିବା' । ଏହା ଶିକାର କରିବାର ବିଧି – ଏହି ଶିକାରଟି ବଡ଼ ମାତ୍ରାରେ କରାଯାଏ ଓ ଏଥିରେ ବେଶ୍ ଖର୍ଚ୍ଚ ହୋଇଥାଏ । କର୍ଣ୍ଣାଟକରେ, *ଖେଦା* କାମରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଥାଏ, କିନ୍ତୁ ଏହି ପଦ୍ଧତିରେ ଧରାଯାଇଥିବା ହାତୀଙ୍କ ସଂଖ୍ୟା କେବେ ବି ଏକ ଶହକୁ ଟପି ପାରିନାହିଁ ।

ମେଘାସ୍ଥିନିସ୍ (ଖ୍ରୀ.ପୂ. 200) ହିଁ ପ୍ରଥମ ବ୍ୟକ୍ତି ରୂପେ ଉତ୍ତର ଭାରତରେ କରାଯାଉଥିବା *ଖେଦା*ର ଖର୍ଚ୍ଚ ପରିମାଣକୁ ସୂଚାଇଥିଲେ ।

Digitized by srujanika@gmail.com

ଓଡ଼ିଶାର ରାଜା ନରସିଂହ ଦେବ ତ୍ରୟୋଦଶ ଶତାବ୍ଦୀରେ *ଖେଦା*ର ଆୟୋଜନ କରୁଥିଲେ । କୋଣାର୍କ ମନ୍ଦିରର କାନ୍ଥରେ ଏହି ଖେଦା ସବୁର ଚିତ୍ର ଅଙ୍କାଯାଇଛି । ଏଥିରେ ଘୋଡ଼ା ଓ ପୋଷା ହାତୀଙ୍କ ଉପରେ ବସି କିଛି ଲୋକ ପଲେ ହାତୀଙ୍କୁ ତଡ଼ି ନେଉଛନ୍ତି । ସାଥିରେ ଅନେକ ଲୋକ ପାଦରେ ଚାଲି ଚାଲି ଢୋଲ ତୁରୀ ଆଦି ବଜାଉଛନ୍ତି ଓ ଚିତ୍କାର କରୁଛନ୍ତି । ଏହି ହାତୀ ପଲଟିରେ ମୁଖ୍ୟତଃ ମାଈହାତୀ ଓ ଛୁଆ ଅଛନ୍ତି । ପଲଟିକୁ ତଡ଼ି ନେଇ ଏକ ବଡ଼ ବାଡ଼ ଭିତରେ ପୂରାଯାଉଛି ।

ଆଗରୁ କୁହାଯାଇଛି ଯେ ହାଇଦର୍ ଅଲ୍ଲୀ ଏହି ପଦ୍ଧତିରେ ହାତୀ ଧରୁଥିଲେ । ବ୍ରିଟିଶ ରାଜତ୍ୱ ସମୟରେ କର୍ଣ୍ଣେଲ୍ ପିଅର୍‌ସନ୍ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏପରି ଏକ ଉଦ୍ୟମ କରିଥିଲେ । ଏହା ବିଫଳ ହୋଇଥିଲା । 1873 ମସିହା ବେଳକୁ ପ୍ରଥମ ଥର ପାଇଁ ସାଣ୍ଡେର୍‌ସନ୍ *ଖେଦା* କାମରେ ସଫଳତା ପାଇ ପାରିଥିଲେ । ଏଥିରେ ମୋଟରେ 53ଟି ହାତୀଙ୍କୁ ଧରାଯାଇଥିଲା । ଏହାପରେ ମହୀଶୂର (ଆଜିର କର୍ଣ୍ଣାଟକ)ରେ ବାରମ୍ବାର *ଖେଦା* ଅଭିଯାନ ଚାଲିଥିଲା, 1950 ମସିହାର ଖେଦାରେ, ମହୀଶୂର ସରକାରଙ୍କ ଜଙ୍ଗଲ ବିଭାଗ ଅଢ଼େଇ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ । ଏଥିରେ ମୋଟରେ 70ଟି ହାତୀଙ୍କୁ ଧରାଯାଇଥିଲା । ଏଥିରେ ଗୋଟିଏ ହାତୀ ଧରିବା ପିଛା ହାରାହାରି ତିନିହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ।

ହରିଦ୍ୱାର ଜଙ୍ଗଲରେ ହାତୀ ଧରିବା ପାଇଁ ଖୁବ୍ କମ୍ ଉଦ୍ୟମ କରାଯାଇଛି । କେତେ ପ୍ରାକୃତିକ ବାଧାବିଘ୍ନ ଯୋଗୁଁ ଏଠାରେ ସନ୍ତୋଷଜନକ ସଫଳତା ମିଳିପାରିନାହିଁ । 1899-1900ର ଶୀତ କାଳରେ ଆୟୋଜିତ *ଖେଦା*ରେ ମାତ୍ର ସାତଟି ହାତୀ ଧରାପଡ଼ିଥିଲେ । ଜ୍ୱାଲାପୁରର ରଙ୍ଗରାସ (ମୁସଲମାନ ରାଜପୁତ) ଥରେ ମତେ କହୁଥିଲେ ଯେ ତାଙ୍କର ପୂର୍ବ ବଂଶଧରମାନେ ଯେତେବେଳେ ଏହି ଜଙ୍ଗଲ ଗୁଡ଼ିକର ମାଲିକ ଥିଲେ, ସେତେବେଳେ ସେମାନେ ଏଠାରୁ ହାତୀ ଧରି ବିକ୍ରି କରି ଦେଉଥିଲେ । ହରିଦ୍ୱାରର ପଣ୍ଡାମାନଙ୍କ ଦ୍ୱାରା ଲିଖିତ ରେଜିଷ୍ଟର୍‌ରେ ସୂଚାଯାଇଛି ଯେ ଏକଦା ସମତଳ ଅଞ୍ଚଳରୁ ରାଜାମାନେ ଏଠାକୁ ହାତୀ କିଣିବାକୁ ଆସୁଥିଲେ । 1876 ମସିହା ଯାଏଁ ଶୁଭ ଅବସରରେ ହାତୀ ଉପହାର ଦିଆଯିବାର ପରମ୍ପରା ଜାରି ରହିଥିବାର ନଜିର ଏବେ ବି ମିଳିପାରୁଛି । ଶ୍ରବଣନାଥ ମଠର ଏକ ଶିଳାଲେଖରେ ସୂଚିତ ଅଛି ଯେ, ମଠର ପ୍ରତିଷ୍ଠାତା ଯେତେବେଳେ ଶିବ ଓ ଗଙ୍ଗାଙ୍କ ପାଇଁ ମନ୍ଦିର ନିର୍ମାଣ କଲେ, ସେ ବ୍ରାହ୍ମଣମାନଙ୍କୁ ଅନେକ ଜିନିଷ ଦାନ କରି ଦେଇଥିଲେ । ଏହି ଦାନ ମଧ୍ୟରେ ପାଞ୍ଚଟି ହାତୀ ବି ଥିଲେ ।

ଗୋଟିଏ ସମୟରେ ହାତୀ ଧରିବା ଓ ବିକ୍ରିକରିବା ଗୋଟିଏ ଲାଭଜନକ ବ୍ୟବସାୟ ଥିଲା । 1948ରେ ଗୋଟିଏ *ଖେଦା*ରୁ ମିଳିଥିବା 35 ହାତୀଙ୍କୁ 66,000 ଟଙ୍କା ମୂଲ୍ୟରେ ବିକ୍ରି କରାଯାଇଥିଲା । 1949ରେ ସେହି ଏକା ସଂଖ୍ୟକ ହାତୀଙ୍କୁ 1,47,377 ଟଙ୍କାରେ ବିକ୍ରି କରାଯାଇଥିଲା । ଏହା ଏ ଯାଏଁ ଏକ ରେକର୍ଡ ହୋଇ ରହିଛି । 1954ରେ, ବଜାରଦର ଏତେ କମିଯାଇଥିଲା ଯେ, ଗୋଟିଏ *ଖେଦା*ରୁ ମିଳିଥିବା 68ଟି ହାତୀଙ୍କୁ ଅତି ତୁଚ୍ଛ ଦାମରେ ବିକ୍ରି କରାଗଲା । ଅତି ଭଲମାନର ଦନ୍ତାହାତୀଙ୍କୁ 500 ଟଙ୍କାରୁ କମ୍ ଦାମରେ ବିକାଯାଇଥିଲା ।

Digitized by srujanika@gmail.com

ଫଳରେ, ମହୀଶୂରରେ *ଖେଦା* କାମ ବନ୍ଦ ହୋଇଯାଇଥିଲା ।

ଏ ଯାଏଁ ମହୀଶୂର (ଆଜିର କର୍ଣ୍ଣାଟକ)ରେ ମୋଟ ଉପରେ 34ଟି *ଖେଦା*ର ଆୟୋଜନ କରାଯାଇଛି ଓ ଏଥିରୁ 1,873ଟି ବଣୁଆ ହାତୀଙ୍କୁ ଧରାଯାଇପାରିଛି । 1960 ପରେ ଶେଷ *ଖେଦା*ଟି 1970 ମସିହାରେ କରାଯାଇଥିଲା । ସବୁଠୁ ଅଧିକ ସଂଖ୍ୟକ ହାତୀ ଥିବା ଜାଗାରେ *ଖେଦା* ବ୍ୟବସ୍ଥା କରାଯାଇଥାଏ । *ଖେଦା* ବ୍ୟବସ୍ଥାର ପ୍ରୟୋଗ ଆଗରୁ ମହୀଶୂର (ଆଜିର କର୍ଣ୍ଣାଟକ)ରେ ଗାତ ଦ୍ୱାରା ହାତୀଙ୍କୁ ଧରାଯାଉଥିଲା । ଦକ୍ଷିଣ ଭାରତର କେତେକ ଭାଗରେ ଏବେ ବି ଏହି ବ୍ୟବସ୍ଥା ପ୍ରଚଳିତ ଅଛି । ଏହା ଏକ ନିଷ୍ଠୁର ବ୍ୟବସ୍ଥା ହେତୁ ମହୀଶୂର (ଆଜିର କର୍ଣ୍ଣାଟକ)ରେ ଏହାକୁ ନିଷେଧ କରିଦିଆଯାଇଥିଲା । ଆସାମ ଓ ବଙ୍ଗଳାରେ କେତେ ଶତାବ୍ଦୀ ଧରି ଏହି *ଖେଦା* ବ୍ୟବସ୍ଥା ପ୍ରଚଳିତ ହୋଇଚାଲିଛି; କିନ୍ତୁ ଏହି ଦୁଇଟି ଜାଗାରେ *ଖେଦା* କରାଯିବାର ଢାଞ୍ଚା ଅଲଗା ଅଟେ । ଉଦାହରଣ ସ୍ୱରୂପ, ବଙ୍ଗଳାରେ ପ୍ରଥମେ ହାତୀଙ୍କୁ ଜଙ୍ଗଲ ମଧ୍ୟରେ ଘେରି ଦିଆଯାଏ । କୌଣସି ଏକ ଜାଗାରେ ଖୁଣ୍ଟି ଘରଟିଏ ତିଆରି କରାଯାଏ ଓ ହାତୀମାନଙ୍କୁ ଖେଦିନେଇ ଏହା ମଧ୍ୟରେ ପୂରାଇ ଦିଆଯାଏ । ଏହି ଖୁଣ୍ଟିଘର କୌଣସି ନିର୍ଦ୍ଦିଷ୍ଟ ଜାଗାରେ ସବୁବେଳେ ନ ଥାଏ । ଏହାର ସ୍ଥାନ ସବୁବେଳେ ବଦଳି ଚାଲିଥାଏ । କର୍ଣ୍ଣାଟକରେ ଏହି ଘରକୁ ସ୍ଥାୟୀ ଭାବେ ଗୋଟିଏ ସ୍ଥାନରେ ତିଆରି କରାଯାଇଥାଏ । ଏହା ଏପରି ଭାବେ ତିଆରି ହୋଇଥାଏ, ଯେପରି ଦର୍ଶକମାନେ ପୂରା *ଖେଦା*ର ସମ୍ପୂର୍ଣ୍ଣ କାର୍ଯ୍ୟକ୍ରମଟିକୁ ଲକ୍ଷ୍ୟ କରିପାରିବେ ।

*ଖେଦା* କରିବାର ସବୁଠୁ ଭଲ ସମୟ ଶୀତଦିନ, ବିଶେଷ କରି, ଜାନୁଆରୀ-ଫେବୃୟାରୀ ସମୟ ଯେତେବେଳେ ଜଙ୍ଗଲ ବିଶେଷ ଆର୍ଦ୍ର ନଥାଏ, କିନ୍ତୁ ଏଠାରେ ଯଥେଷ୍ଟ ପାଣି ଥାଏ । ଜଙ୍ଗଲ ପୋଡ଼ିର ବି ବିଶେଷ ପ୍ରାଦୁର୍ଭାବ ନଥାଏ ।

କର୍ଣ୍ଣାଟକର ଦୁଇଟି ଅଞ୍ଚଳରେ ହିଁ *ଖେଦା* କାମ କରାଯାଇଥାଏ । ଏହା ହେଉଛି : ଚମ୍‌ରାଜନଗର *ତାଲୁକା*ର ବୁଢ଼ୀପାଦ୍‌ଗା ଓ ହେଗ୍ଗାଡ଼ା ଦେୱାନ୍‌କୋଟ୍ *ତାଲୁକା*ର କାକନ୍‌କୋଟ୍ । ଏହି ଦୁଇଟି ମଧ୍ୟରେ କାକନ୍‌କୋଟ୍‌ର *ଖେଦା*ଟି ଅଧିକ ଦର୍ଶନୀୟ ହୋଇଥାଏ । ଏଠାରେ *ଖେଦା* କାମ ଗୋଟିଏ ନଦୀ ନିକଟରେ କରାଯାଇଥାଏ । ଏଥିରେ ନଦୀ ପାର ହେବାକୁ ପଡ଼େ । ଏହି ସମୟରେ ହାତୀଗୁଡ଼ିକ ନଦୀ ଭିତର ଦେଇ ତଡ଼ି ହୋଇ ଥାଆନ୍ତି । ଏହି ଦୃଶ୍ୟକୁ ଦର୍ଶକମାନେ ନଦୀର ଉଭୟ ପଟେ ଠିଆ ହୋଇ ଦେଖିଥାଆନ୍ତି ।

ଗୋଟିଏ ହାତୀ ପଲକୁ ଠାବ କରାଯିବା ପରେ ଏହାର ଗତି-ଦିଗକୁ ଭଲରୂପେ ଲକ୍ଷ୍ୟ କରାଯାଏ । ଚେଷ୍ଟା କରାଯାଏ, ଯେପରି ହାତୀମାନେ ମଣିଷର ଉପସ୍ଥିତି ସମ୍ପର୍କରେ କୌଣସି ଧାରଣା ପାଇପାରିବେ ନାହିଁ । ହାତୀପଲଟି ଖୁଣ୍ଟିଘରଠାରୁ 12 କିଲୋମିଟର ଦୂରରେ ଥାଇପାରନ୍ତି । ଲୋକମାନଙ୍କୁ ପ୍ରାୟ 20 ମିଟର ଲେଖାଏଁ ଦୂରତା ଛାଡ଼ି ରାସ୍ତାର ଉଭୟ ପଟେ ଠିଆ କରି ଦିଆଯାଏ, ଯେଉଁ ରାସ୍ତାଦେଇ ହାତୀମାନେ ଖୁଣ୍ଟିଘର ଆଡ଼କୁ ଯାଇଥାନ୍ତି । ସେମାନେ ଦିନରାତି ନିଆଁଜାଳି ରଖିଥାନ୍ତି ଓ ହାତରେ ବାଉଁଶ ଧରିଥାଆନ୍ତି, ଯାହାର ଅଗଗୁଡ଼ିକୁ ଫାଳ କରି ଦିଆଯାଇଥାଏ ଓ ଏହାକୁ ଭୂଇଁରେ ବାଡ଼େଇଲେ ବାଣ

Digitized by srujanika@gmail.com

ଫୁଟିଲା ପରି ଶବ୍ଦ ହୋଇଥାଏ । କୌଣସି ହାତୀ ଯଦି ଏହି ଗୋଳେଇ ବାହାରକୁ ଚାଲିଯାଆନ୍ତି ତାଙ୍କୁ ପୁଣି ଅଡ଼ାଇ ଘେର ଭିତରକୁ ଫେରାଇ ଅଣାଯାଏ । ଧୀରେ ଧୀରେ ଘେରଟିକୁ ଛୋଟରୁ ଛୋଟ କରି ଦିଆଯାଏ । ଖେଦାର ଶେଷଦିନ ଦର୍ଶକମାନଙ୍କୁ ନିର୍ଦ୍ଦିଷ୍ଟ ଜାଗାରେ ରହି ଦେଖିବାକୁ ଦିଆଯାଏ । ପୋଷା ହାତୀଙ୍କ ଉପରେ ବସି ଅସ୍ତ୍ରରେ ସଜ୍ଜିତ ମାହୁନ୍ତମାନେ ଏହି ହାତୀପଲଟିକୁ ଖୁଣ୍ଟିଘର ଆଡ଼କୁ ଅଡ଼ାଇ ନିଅନ୍ତି । ଘର ଭିତରେ ପୂରାଇବା ପାଇଁ ସେମାନେ ଲଗାତାର ଚିତ୍କାର କରୁଥାନ୍ତି, ଢୋଲ ବାଦ୍ୟାଉଥାନ୍ତି ଓ ବାଣ ଫୁଟାଉଥାନ୍ତି । କିଛି ଲୋକ ହାତୀ ପଲଟି ଉପରେ ନିଘା ରଖିଥାନ୍ତି । ସେମାନେ ଗଛ ଉପରେ ଲୁଚି ରହି ସଙ୍କେତ ଦ୍ୱାରା ଅନ୍ୟ ଲୋକମାନଙ୍କୁ ହାତୀ ଦଳଟିର ଗତିବିଧି ବିଷୟରେ ଖବର ଦେଇ ଚାଲିଥାନ୍ତି ।

ଆଗରୁ ଆର୍ଯ୍ୟମାନେ ଏକ ଅଲଗା ଉପାୟରେ ହାତୀ ଧରୁଥିଲେ । ସେମାନେ ଗୋଟିଏ ବଡ଼ ଘେର ବନାଇ ଏହାର ଚାରିପାଖରେ ଗାତ ଖୋଳି ଦେଉଥିଲେ । ଏହି ଗାତକୁ ଟପି ଘେରଭିତରକୁ ପଶିବା ପାଇଁ ଗୋଟିଏ ମାତ୍ର ପୋଲ ରହୁଥିଲା । ପୋଷା ମାଈ ହାତୀଟିଏ ହାତୀ ଦଳ ପାଖକୁ ଯାଇ ଏହାର ଦଳପତିକୁ ଏହି ଘେରଟି ଆଡ଼କୁ ବାଟ ଦେଖାଇ ନେଉଥିଲା । ଦଳର ଅନ୍ୟ ହାତୀ ସବୁ ବି ସେମାନଙ୍କ ପଛେ ପଛେ ଚାଲୁଥିଲେ । ସବୁ ହାତୀ ଘେର ଭିତରେ ପଶିଯିବା ପରେ ସେତୁଟିକୁ ଭାଙ୍ଗି ଦିଆଯାଉଥିଲା । ଧରାପଡ଼ିଥିବା ହାତୀ ଦଳଟିକୁ କିଛିଦିନ ପାଇଁ ଭୋକିଲା ଛାଡ଼ିଦିଆଯାଉଥିଲା । ତା' ପରେ କିଛି ପୋଷା ହାତୀଙ୍କୁ ଘେରଟି ଭିତରେ ଛାଡ଼ି ଦିଆଯାଉଥିଲା, ଯିଏ ବଣୁଆ ହାତୀ ଦଳଟିକୁ ବାଟକୁ ଆଣୁଥିଲେ । ବେଳେ ବେଳେ ବଣୁଆ ହାତୀ ଓ ପୋଷା ହାତୀଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହେଉଥିଲା । ତା'ପରେ ବଣୁଆ ହାତୀଗୁଡ଼ିକୁ ଗୋଟିକ ପରେ ଗୋଟିଏ ହୋଇ ସମସ୍ତଙ୍କୁ ଅଲଗା କରି ଦିଆଯାଉଥିଲା । ପୋଷା ହାତୀଙ୍କ ପିଠିରୁ ଦଉଡ଼ି ପକାଇ ବଣୁଆ ହାତୀଙ୍କ ବେକକୁ ବାନ୍ଧି ଦିଆଯାଉଥିଲା । ବୟସ୍କ, ଅସନ୍ତୁଳିତ ଓ ଛୁଆ ହାତୀମାନଙ୍କୁ ଛାଡ଼ିଦିଆଯାଉଥିଲା । ଅନ୍ୟ ହାତୀଗୁଡ଼ିକୁ ଗଛରେ ବାନ୍ଧି ଦିଆଯାଉଥିଲା । ଥରେ ଖାପଚାରେ ପଡ଼ିଗଲା ପରେ ଅସହାୟ ଭାବରେ ଶିକାରୀମାନଙ୍କର ବୋଲ ମାନିବା ଛଡ଼ା ଏହି ହାତୀଗୁଡ଼ିକ ଆଗରେ ଆଉ କୌଣସି ଚାରା ନ ଥିଲା । କାଳକ୍ରମେ ସେମାନେ ହାତୀ, ଗାଈଙ୍କ ପରି ଅତ୍ୟନ୍ତ ବୋଲମନା ଜୀବ ପାଲଟିଯାଉଥିଲେ । ଖୁବ୍ ବିରଳ କ୍ଷେତ୍ରରେ ଏପରି ବି ହେଉଥିଲା ଯେ, ହାତୀଟିଏ ଏପରି ଲଜ୍ଜାକର ପରିସ୍ଥିତିରେ ମୁଣ୍ଡ ନୁଆଁଇବା ବଦଳରେ ମରିଯିବାକୁ ଅଧିକ ପସନ୍ଦ କରୁଥିଲା । ସେ ଖାଦ୍ୟ ଗ୍ରହଣ କରୁ ନଥିଲା, ଧୀରେ ଧୀରେ ଦୁର୍ବଳ ହୋଇ ସେ ଶେଷରେ ମରିଯାଉଥିଲା ।

ଅଭିଜ୍ଞତା ବଢ଼ିବା ସହିତ ଏହି ପଦ୍ଧତି ଆହୁରି ମାର୍ଜିତ ହୋଇପାରିଛି । ଆଜିକାଲି ଘେର ଚାରିପାଖରେ ଏକମିଟର ଉଚ୍ଚ ବାଡ଼ ଦିଆଯାଉଛି । କେତେକ ସ୍ଥାନରେ ଘେରର ଭିତର ପାଖରେ 2 ମିଟର ଚଉଡ଼ା ଓ 1.3 ମିଟର ଗଭୀର ଗାତ ଖୋଳି ଦିଆଯାଉଛି । ଘେର ଭିତରକୁ ପଶିବା ପାଇଁ 1 ମିଟର ଚଉଡ଼ା ବାଟଟିଏ ରଖାଯାଉଛି । ହାତୀଗୁଡ଼ିକ ଭିତରକୁ ପଶିଯିବା

Digitized by srujanika@gmail.com

ପରେ ପରେ ଏହି ବାଟଟିକୁ ବନ୍ଦ କରିଦିଆଯାଉଛି । ହାତୀ ପଲଟିକୁ ଭିତରେ ପୂରାଇବା ପାଇଁ ତାଲିମ ପାଇଥିବା ହାତୀଙ୍କୁ ବି ଏହି କାମରେ ଲଗାଯାଉଛି ।

**ନଦୀ ଖେଦା**

ଏହି କାମଟି ପାଇଁ ଯଥେଷ୍ଟ ସାହସ ଓ ଦକ୍ଷତା ଦରକାର ହୋଇଥାଏ । ପ୍ରଥମେ ସେମାନେ ହାତୀଙ୍କର ବାସସ୍ଥଳଟିକୁ ଠାବ କରନ୍ତି ଓ ଏହା ଚାରିପାଖରେ ବିଭିନ୍ନ ଜାଗାରେ ପ୍ରାୟ 2000 ଲୋକଙ୍କୁ ଜଗାଇଦିଅନ୍ତି । ଏହି ହାତୀ ଧରାଳୀମାନେ ହାତୀଙ୍କର ହାବଭାବ ବିଷୟରେ ଆଗରୁ ଜାଣିଥାଆନ୍ତି । ସେମାନେ ଜାଣିଥାନ୍ତି ହାତୀ ଦଳଟି କେତେବେଳେ ନିଜ ନିତ୍ୟକର୍ମ ପାଇଁ ନଦୀକୂଳକୁ ଯିବ । ସେମାନେ ଏହା ଉପରେ ଆଖି ରଖିଥାନ୍ତି । ହାତୀ ଦଳଟି ନଦୀ ଆଡ଼କୁ ମୁହାଁଇବା କ୍ଷଣି ଲୋକମାନେ ତିନୋଟି ଦିଗରୁ ତାଙ୍କୁ ଚଢ଼ିବାରେ ଲାଗନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସେମାନେ ଆକାଶକୁ ଫାଙ୍କା ଗୁଳି ଚଳାନ୍ତି ଏବଂ ଢୋଲ, ଟିଣ ଆଦି ବାଡ଼େଇ ପ୍ରବଳ ଶବ୍ଦ କରନ୍ତି । ମଶାଲ ବି ଜଳାଯାଏ । ଏଥିରେ ଚମକି ଉଠି ହାତୀମାନେ ପୂର୍ବ ନିର୍ଦ୍ଧାରିତ ବାଟରେ ଆଗେଇ ଚାଲନ୍ତି ।

କାକାନ୍‌କୋଟ୍‌ଠାରେ ଏହି ନଦୀ *ଖେଦା* କାମଟି ଅତ୍ୟନ୍ତ ଦର୍ଶନୀୟ ହୋଇଥାଏ । ସବୁ ଆକାର ଓ ବୟସର ହାତୀ ପ୍ରବଳ ଗର୍ଜନ କରି ପାଣିକୁ କୁଦି ପଡ଼ନ୍ତି । କେତେକ ହାତୀ ଖସିଯିବା ପାଇଁ କୂଳକୁ ଉଠିଆସନ୍ତି । ସେ ସମୟରେ ତାଙ୍କୁ ପାଣି ମଝିରେ ଥିବା ଘେର ଭିତରେ ପୂରାଇବା ଅତି ମୁସ୍କିଲ ହୋଇଯାଇଥାଏ । କେତୋଟି ମାଆ ନିଜ ଛୁଆଙ୍କୁ ଶୁଣ୍ଢରେ ଟେକି ଧରିଥାନ୍ତି । ଘେରର ଧାରଗୁଡ଼ିକରେ ଡାଳପତ୍ର ଓ ଘାସରେ ଢାଙ୍କି ଦିଆଯାଇଥାଏ । ହାତୀମାନେ ଏହାକୁ ଗଛ ଭାବି ଧୋକା ଖାଇ ଯାଆନ୍ତି । ହାତୀ ଦଳପତିଟି ଯଦି କୌଣସିମତେ ଘେର ଭିତରେ ପଶିଯାଏ, ତା' ପରେ ଅନ୍ୟସବୁ ହାତୀ ବିନା ଦ୍ୱିଧାରେ ତା' ଭିତରେ ପଶି ଯାଆନ୍ତି । ଶେଷ ହାତୀଟି ଏହା ଭିତରେ ପଶିଯିବା ପରେ ପରେ ଏହାର ଫାଟକଟିକୁ ବନ୍ଦ କରିଦିଆଯାଏ । ହାତୀଗୁଡ଼ିକ ଏବେ ବନ୍ଦୀ ହୋଇଯାଇଥାନ୍ତି । ପାଖରେ ଥିବା ମଞ୍ଚ ଉପରେ ବସି ଏହି ଦୃଶ୍ୟଟିକୁ ପୂରାପୂରି ଦେଖି ହୋଇଥାଏ । କେବଳ କର୍ଣ୍ଣାଟକ (ଆଗର ମହୀଶୂର)ରେ ଏଥିପାଇଁ ଏକ ବଡ଼ ଖୁଣ୍ଟିଘର ବନାଯାଇଥାଏ ଓ କାମଟିକୁ ଦିନ ବେଳା କରାଯାଇଥାଏ । ଉତ୍ତର-ପୂର୍ବ ଭାରତର ଅନ୍ୟସବୁ ଜାଗାରେ ଛୋଟ ଖୁଣ୍ଟିଘର ବନାଯାଇଥାଏ ଓ କାମଟିକୁ ରାତିରେ ହିଁ କରାଯାଇଥାଏ । ଏହି ଖୁଣ୍ଟିଘରଗୁଡ଼ିକୁ ହାତୀମାନେ ଯିବାଆସିବା ବାଟରେ ବା ଲୁଣଖିଆ ଜାଗା ନିକଟରେ କରାଯାଇଥାଏ । ଅନ୍ୟ ତୃଣଭୋଜୀ ପ୍ରାଣୀଙ୍କ ପରି ହାତୀମାନେ ବି ଲୁଣିଆ ପଥର ବା ମାଟି ଖାଇବାକୁ ଭଲ ପାଇଥାନ୍ତି । ଜଙ୍ଗଲରେ କେତେକ ଜାଗାରେ ଏହି ରକମର ମାଟି ରହିଥାଏ । କାଳିଦାସଙ୍କ *ରଘୁବଂଶ*ରେ ଏପରି ଜାଗାଗୁଡ଼ିକୁ ଲବଣ ଶିଳା ରୂପେ ବର୍ଣ୍ଣନା କରାଯାଇଛି । ଏହି ଲୁଣଖିଆ ଜାଗାଗୁଡ଼ିକରେ ହାତୀଙ୍କୁ ଧରିବା କୌଶଳରେ ଏପରି ଜାଗାଟିଏ ବିଛାଯାଇଥାଏ ଯେଉଁଠାକୁ ବଣର ଅନେକ ପଶୁ ଦଳ ଦଳ

Digitized by srujanika@gmail.com

ହୋଇ ଆସିଥାନ୍ତି । ଏହା ପାଖରେ ହିଁ ଖୁଣ୍ଟି ଘରଟିକୁ ବନାଯାଇଥାଏ । ହାତୀମାନେ ଯେତେବେଳେ ଲୁଣ ଖାଇବା ପାଇଁ ଏହି ଇଲାକାକୁ ଚାଲିଆସନ୍ତି, ତାଙ୍କୁ ଚୁପ୍‌ଚାପ୍ ଚାରିପଟୁ ଘେରି ନିଆଯାଇ ଖୁଣ୍ଟିଘର ଭିତରେ ଭର୍ତ୍ତି କରିଦିଆଯାଏ ।

## ମେଳା ଶିକାର

ଏହାକୁ ଏକ ରକମର ଖେଳ ବୋଲି କୁହାଯାଇପାରେ । ତାଲିମ ପାଇଥିବା ହାତୀଙ୍କ ପିଠିରେ ବସି ବିଶେଷଜ୍ଞମାନେ ବଣୁଆ ହାତୀପଲକୁ ଗୋଡ଼ାଇ ଗୋଡ଼ାଇ ଗୋଟିଏ ଲେଖାଏଁ ହାତୀକୁ ଫାଶ ପକାଇ ଧରନ୍ତି । ଏହା ଖେଦା ପଦ୍ଧତିର ଓଲଟା ପଦ୍ଧତି ଅଟେ । ଏଥିରେ କୌଣସି ଶବ୍ଦ କରି ହାତୀମାନଙ୍କୁ ବ୍ୟତିବ୍ୟସ୍ତ କରାଯାଇନଥାଏ । ଲୁଚିଛପି ଚୁପ୍‌ଚାପ୍ ହାତୀକୁ ଧରାଯାଇଥାଏ । ଏଥିରେ ଶିକାରୀ ଦଳଟି ପ୍ରତି ବିପଦ ରହିଥାଏ । ହାତୀଛୁଆଗୁଡ଼ିକ ଶୀଘ୍ର ଶୀଘ୍ର ଧାଇଁପାରନ୍ତି ନାହିଁ । ତେଣୁ ସେମାନେ ଆଗ ଧରାପଡ଼ିଯାଆନ୍ତି ।

## ତାଲିମ

ହାତୀକୁ ତାଲିମ ଦେବା ପାଇଁ ଯଥେଷ୍ଟ ଉଦ୍ୟମୀ, ଦୃଢ଼ତା ଓ ଧୈର୍ଯ୍ୟ ଲୋଡ଼ା ହୋଇଥାଏ । ମାହୁନ୍ତ ଜାଣିଥାଏ ଯେ ଏହି ଜୀବଟିକୁ ପୋଷା ମନାଯିବା ବେଶ୍ କଠିନ କାମ ଓ ସେ ଏତେ ଟାଣୁଆ ଯେ ସହଜରେ ତାକୁ ମାରି ଦେଇପାରେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ବେଶ୍ କମ୍ ସମୟରେ ସେମାନଙ୍କ ହିଂସ୍ରତା ଆଜ୍ଞାବହ ଭାବରେ ପରିଣତ ହୋଇଯାଏ । ଆରମ୍ଭରେ ମାହୁନ୍ତ ଗୋଟିଏ ବାଡ଼ି ବା ଆଙ୍କୁଶ ସାହାଯ୍ୟରେ ହାତୀଟିକୁ ତାଲିମ ଦେଇଥାଏ । ହାତୀକୁ ନିୟନ୍ତ୍ରଣ କରିବା ପାଇଁ ସବୁ ମାହୁନ୍ତଙ୍କ ହାତରେ ଆଙ୍କୁଶ ରହିଥାଏ । ଗୀତ ଶୁଣାଇ, ମାଲିସ କରି ଓ ତା'ର ମନପସନ୍ଦ ଖାଦ୍ୟ ଖୁଆଇ ଖୁଆଇ ହାତୀକୁ ପୋଷା ମନାଯାଏ ଓ ତାଲିମ ଦିଆଯାଇଥାଏ ।

ହାତୀ କୌଣସି କଥା ଓ ଘଟଣାକୁ ଚମତ୍କାର ଭାବେ ମନେ ରଖିପାରିଥାଏ । ଏହି ଗୁଣରେ ଖୁବ୍ କମ୍ ପ୍ରାଣୀ ହାତୀର ସମତୁଲ ହୋଇପାରିବେ । ତାଲିମ ସମୟରେ ହାତୀକୁ ସମୁଦାୟ 27ଟି ଆଦେଶ ଶବ୍ଦ ମନେ ରଖିବାକୁ ହୋଇଥାଏ । ଏହି ଶବ୍ଦ ମାଧ୍ୟମରେ ସେ ବୁଲିବା, ବସିବା, ଠିଆହେବା, ଶୁଣ୍ଢ ଟେକିବା, ନାତ ମାରିବା, ଚାଲିବା ଓ ଏପରି ଅନେକ କାମ କରିପାରିଥାଏ । କିନ୍ତୁ ଏହି ଶବ୍ଦଗୁଡ଼ିକ ଉପରେ ଦକ୍ଷତା ପାଇଁ ହାତୀ ସହିତ ଲାଗିବାକୁ ପଡ଼ିଥାଏ । ଗୋଟିଏ କଥା ଶିଖିଗଲା ପରେ ହାତୀକୁ ଏକ ପୁରସ୍କାର ରୂପେ କିଛି ଖାଇବାକୁ ଦିଆଯାଏ । ଏହାଦ୍ୱାରା ସେ ବିଭିନ୍ନ ଖାଦ୍ୟ ସହିତ ବିଭିନ୍ନ କାମ ଓ ଶବ୍ଦର ସମ୍ପର୍କକୁ କ୍ରମଶଃ ମନେ ରଖେ । ପରେ ଖାଦ୍ୟ ବିନା ବି ଶବ୍ଦ ଅନୁସାରେ କାମ କରିବା ତା'ର ଅଭ୍ୟାସରେ ପଡ଼ିଯାଏ । ଏହି ପଦ୍ଧତିରେ, ସର୍କସ୍ ପରି କିଛି ମାହୁନ୍ତ ହାତୀକୁ କେତୋଟି କୌଶଳ ଶିଖାଇ ଦେଇ ପାରିଥାନ୍ତି । ନିୟମ ଅନୁସାରେ, ହାତୀ ପ୍ରଥମ ଡଜନଟିଏ ଶବ୍ଦକୁ ବୁଝିବା ପାଇଁ ପ୍ରାୟ ତିନିମାସ ସମୟ ନେଇଥାଏ । ଦକ୍ଷିଣ ଭାରତରେ କାଠଗଣ୍ଡିକୁ ଭିଡ଼ିବା କାମରେ ଲାଗୁଥିବା ହାତୀକୁ ପ୍ରାୟ 40ଟି ଆଦେଶ ଶବ୍ଦ ଶିଖାଯାଇଥାଏ ।

Digitized by srujanika@gmail.com

## ଖିଆପିଆ

ହାତୀର ଭୋକ ପ୍ରବଳ ଅଟେ । ଜଙ୍ଗଲରେ ସେ 24 ଘଣ୍ଟା ସାରା ଖାଇ ଚାଲିଥାଏ । ସେ ଘାସ, ଡାଳପତ୍ର, ଲତା,ଫଳ ଓ ଗଛର ସବୁ ଅଂଶକୁ ଖାଇଥାଏ । କେବଳ ମଧ୍ୟାହ୍ନ ପରେ ସାମାନ୍ୟ ବିଶ୍ରାମ ସମୟକୁ ଛାଡ଼ିଦେଲେ ତା' ଖିଆ ଲଗାତାର ଚାଲିଥାଏ । ରାତିରେ ମଧ ଏହା ଅଳ୍ପ କିଛି ସମୟ ପାଇଁ ଶୋଇପାରେ । ତେଣୁ ପୋଷା ହାତୀକୁ ଯଥେଷ୍ଟ ପରିମାଣରେ ଖାଦ୍ୟ ଦେବାକୁ ପଡ଼ିଥାଏ । ତାଲିମ ସମୟରେ ତାକୁ ରନ୍ଧା ଖାଦ୍ୟ ବି ଦିଆଯାଇଥାଏ ।

ପୋଷା ହାତୀକୁ ଅଶ୍ୱତ୍ଥ, ବର, ପଣସ ଆଦି ଗଛର ଡାଳ, ବାଉଁଶଡାଳ, ତାଳ ଗଛର ବାହୁଙ୍ଗା, ଧାନ, ବାଜରା ଆଦିର କୁଣ୍ଡା, ମକା ଗଛ, ବିଭିନ୍ନ ପ୍ରକାରର ଘାସ, ଡାଲି ଜାତୀୟ ଶସ୍ୟ, କଦଳୀ ପତ୍ର ଓ ଗଣ୍ଡି, ନଡ଼ିଆ ଓ ଅନ୍ୟାନ୍ୟ ଫଳ ଖାଇବାକୁ ଦିଆଯାଇଥାଏ । ଦଶମ ଶତାବ୍ଦୀ [1]ସମୟରେ ହାତୀକୁ ବାର୍ଲି, ଗହମ, ମଟର ବୁଟ ଓ ବାଜରା ଆଦି ଖୁଆଯାଉଥିବାର ଉଲ୍ଲେଖ କରାଯାଇଛି ।

କର୍‌ବେଟ୍ ଜାତୀୟ ପାର୍କରେ ବଣୁଆ ହାତୀମାନେ ତଳସୂଚିତ ଖାଦ୍ୟଗୁଡ଼ିକ ଖାଉଥିବାର ଦେଖାଯାଇଛି : ବିଭିନ୍ନ ଘାସ, ବାଉଁଶ, ପମ୍ପାସ୍ ଘାସ, *ଉଲ୍ଲା, ନାଳ୍‌କୁଲ୍* ଓ କେତେକାଂଶରେ ପାଟେରା; *ରୋହିଣୀ, ଅଶ୍ୱତ୍ଥ*, ବର, *ଖାବାକ, ସନ୍ଦନ, କଚ୍‌ନାର୍, ପିଲ୍‌ଖାନ୍ ବାହେରା, ହରଡ଼ ଖଇର* ଓ ବେତ ଗଛର ଡାଳପତ୍ର; *ସିସମ୍*, ବର, *ଶିମୁଳି*, ଶାଳ, ବା *କଚ୍‌ନାର୍ ସନ୍ଦନ* ଆଦି ଗଛର ଛାଲି ଇତ୍ୟାଦି । ହାତୀମାନେ ଦାନ୍ତ ଦ୍ୱାରା ଗଛର ବକଳକୁ ଆଘାତ କରନ୍ତି ଓ ଶୁଣ୍ଢରେ ଏହାର ଛାଲିକୁ ଭିଡ଼ି ଆଣନ୍ତି । କେତେକ ଗଛର ଛାଲି ଅନ୍ୟଗଛର ଛାଲି ତୁଳନାରେ ବେଶ୍ ଅଧିକ ସ୍ୱାଦିଷ୍ଟ ହୋଇଥାଏ । 1968 ମସିହା ମେ 20 ତାରିଖରେ ମୁଁ ଦେଖିଥିଲି, ଆଠ ଦଶଟି ହାତୀ ଗୋଟିଏ ଶାଳ ଗଛର ଛାଲି ଖାଇବା ପାଇଁ ଟଣାଓଟରା ଚଳାଇଥିଲେ । ଏହି ପାର୍କରେ ରୋହିଣୀ ଗଛ ହାତୀମାନଙ୍କର ପ୍ରଧାନ ଖାଦ୍ୟ ହୋଇଥାଏ । ହାତୀମାନେ ଗୋଟିଏ ରୋହିଣୀ ଗଛକୁ ତଳେ ଶୁଆଇ ଦିଅନ୍ତି । ଏଥିରୁ ଡାଳପତ୍ର ଖାଇ ଦେଇସାରି ସେମାନେ ସେଠାରୁ ପଳାନ୍ତି । ଥରେ ମୁଁ ଦେଖିଥିଲି 20 ସରିକି ହାତୀ ଅଧଘଣ୍ଟା ଧରି ଶୋଇଯାଇଥିବା ଗୋଟିଏ ରୋହିଣୀ ଗଛକୁ ଖାଇବାରେ ଲାଗିଯାଇଥିଲେ ।

ସେହି ପାର୍କରେ ସାରକନ୍ଦ ଓ କଳମ ଘାସ ପ୍ରଚୁର ପରିମାଣରେ ମାଡ଼ିଥାଏ । ଏହି ଘାସର ମୂଳ ଗୁଡ଼ିକ ହାତୀଙ୍କ ପାଇଁ ବିଶେଷ ରୂପେ ସ୍ୱାଦିଷ୍ଟ ଓ ପୁଷ୍ଟିକର ହୋଇଥାଏ । ଅବଶ୍ୟ ଏହାକୁ ଖୋଳିବା ପାଇଁ ଅଧିକ ସମୟ ଲାଗିଥାଏ । ଏଥିପାଇଁ ହାତୀମାନେ ଶୁଣ୍ଢରେ ଏହାର ମୂଳଟିକୁ ଗୁଡ଼ାଇ ଧରନ୍ତି ଓ ଉପରକୁ ଭିଡ଼ିଆଣନ୍ତି । ଖରାଦିନେ ଏହି ଘାସ ଉଠିଥିବା ଜାଗାକୁ ପରୀକ୍ଷା କଲେ ହାତୀଙ୍କ ଯାତାୟତ ବିଷୟରେ ସୂଚନା ମିଳିଯାଏ, କାରଣ ଏହି ସମୟରେ ଘାସଗୁଡ଼ିକ ପୋଡ଼ିଯାଇଥାଏ ଓ ଏହାକୁ ଭୂମିରୁ ଓପାଡ଼ିବା ପାଇଁ ହାତୀକୁ ପାଦ ଲଗାଇବାକୁ ପଡ଼େ । ଏଥିଯୋଗୁଁ ସେଠାରେ ଛାପ ରହିଯାଏ ।

ଆସାମରେ ହାତୀଙ୍କର ପ୍ରଧାନ ଖାଦ୍ୟ ହୋଇଥାଏ ଆଲ୍‌ପିନିଆ ବା ତାରା ଘାସ ।

---

[1] *ହସ୍ତାୟୁର୍ବେଦ*, ଆନନ୍ଦାଶ୍ରମ ମୁଦ୍ରଣାଳୟ, 1894, p.646, ଶ୍ଳୋକ 56 ।

Digitized by srujanika@gmail.com

ଏହାଛଡ଼ା ଏଠାରେ ହାତୀମାନଙ୍କୁ ଧାନ ସହିତ ଅଳ୍ପ ଶାଳ ବି ଦିଆଯାଇଥାଏ – କାମ ଥିବା ଦିନରେ 9 କି.ଗ୍ରା. ଓ ଛୁଟି ଦିନମାନଙ୍କରେ 5 କି.ଗ୍ରା. । ଉତ୍ତର ଭାରତରେ ସେମାନଙ୍କୁ ଦିନକୁ ଚାଉଳ ଓ ଗହମରେ ତିଆରି 10ରୁ 14 କି.ଗ୍ରା. ରୁଟି ଦିଆଯାଇଥାଏ । କର୍ଣ୍ଣାଟକରେ ଛୁଆ ସହିତ ମା' ହାତୀକୁ ଦିନକୁ 10ଟି ନଡ଼ିଆ ଓ ୩କି.ଗ୍ରା ଚାଉଳ ଦିଆଯାଇଥାଏ । ତାମିଲନାଡୁରେ ହାତୀଙ୍କୁ ରେଗି ଦାନାକୁ ବି ରାନ୍ଧିକରି ଖାଇବାକୁ ଦିଆଯାଇଥାଏ । ଷ୍ଟୁଆର୍ଟ ଶୃଙ୍ଗ ଓ କାନ୍‌ଗୁଡ଼ିରେ ହାତୀମାନଙ୍କୁ ପ୍ରତିଦିନ ଦିଆଯାଉଥିବା ଖାଦ୍ୟର ଏକ ତାଲିକା ତଳେ ଦିଆଯାଇଛି :

| | *ପିଡ଼ିଆ* (କି.ଗ୍ରା.) | *ଶୁଖିଲା ଚଷ୍ଟୁ* (କି.ଗ୍ରା.) | *କଞ୍ଚା ଚଷ୍ଟୁ* (କି.ଗ୍ରା.) | *ଲବଣ* (ଗ୍ରାମ୍) | *ତେଲ* (ଗ୍ରାମ୍) |
|---|---|---|---|---|---|
| ବିଶାଳ ହାତୀ | 7 | 90 | 216 | 56 | 28 |
| ମଝିଲା ହାତୀ | 7 | 79 | 180 | 56 | 28 |
| ଛୋଟ ହାତୀ | 7 | 68 | 145 | 56 | 28 |

ଗୋଟିଏ ମଲା ମାଈ ହାତୀର ଅନ୍ନନାଳୀକୁ ଯାଞ୍ଚ କରି ଦେଖାଯାଇଥିଲା, ଏଥିରେ ବିଭିନ୍ନ ପରିମାଣରେ ହଜମ ହୋଇଥିବା 568 କି.ଗ୍ରା. ଖାଦ୍ୟ ଓ ହଜମ ନ ହୋଇ 68 କିଲୋଗ୍ରାମ୍ ଖାଦ୍ୟ ଜମି ରହିଥିଲା । ମାଈ ହାତୀଟିର ଓଜନ 3,150 କିଲୋ ଗ୍ରାମ୍‌ରୁ ଅଧିକ ଥିଲା । ଏହାର ଗର୍ଭାଶୟରେ ଗୋଟିଏ ପୂର୍ଣ୍ଣ ବିକଶିତ ଭ୍ରୂଣ ବି ରହିଥିଲା । ଏଥିରୁ ଜଣାଯାଉଛି ଯେ ହାତୀଟିଏ ତା' ଦେହ ଓଜନର ପ୍ରାୟ ଏକ ପଞ୍ଚାମାଂଶ ଓଜନର ଖାଦ୍ୟ ଖାଇପାରେ ।

ଗୋଟିଏ ହାତୀ ଏକାଥରକେ 55ରୁ ୫1 ଲିଟର ପାଣି ପିଇଥାଏ । ଦିନକ ମଧ୍ୟରେ ଏହା ପ୍ରାୟ 225 ଲିଟର ପାଣି ପିଇଦେଇଥାଏ । ହାତୀଙ୍କୁ ଦିନରେ ଦୁଇତିନିଥର ଗାଧୋଇବାକୁ ପଡ଼ିଥାଏ ।

## ବନ୍ଦୀ ରହିବାକୁ ଚାହିଁଥିବା ହାତୀ

ଅନେକ ଘଟଣା ଶୁଣିବାକୁ ମିଳେ ଯେଉଁଥିରେ କୁହାଯାଇଛି ଯେ, ହାତୀମାନେ ଖସି ପଳାଇଛନ୍ତି ଓ ନିଜେ ନିଜେ ପୁଣି ଲେଉଟି ଆସିଛନ୍ତି । 1934ରେ ଆସାମର ବଳଭଦ୍ର ସାଇକିଆ ଗୋଟିଏ ନୂଆରେ ଧରାଯାଇଥିବା ହାତୀକୁ କିଣିଲେ, ଯାହାର ଉଚ୍ଚତା ସେତେବେଳେ 2 ମିଟରରୁ କମ୍ ଥିଲା । ଅଳ୍ପ କେତେଟା ବର୍ଷରେ ସେ ପୂରା ତାଲିମ ନେଇନେଲା ଓ ଗୋଟିଏ ମାଈ ହାତୀ ସହିତ ଯାଇ ବଣୁଆ ହାତୀଙ୍କୁ ଧରିବାରେ ଓସ୍ତାଦ୍ ବନିଗଲା । ତା'ର ମୁଣ୍ଡରେ ବାଳ ଭର୍ତ୍ତି ହୋଇଥିଲା ଓ ତା ଶୁଣ୍ଢରେ ଗୋଟିଏ ବଡ଼ କଣା ଥିଲା । ପାଣି ପିଇଲା ବେଳେ ଏହି ବାଟ ଦେଇ ବେଶ୍ ପାଣି ବାହାରି ଆସୁଥିଲା । ଦିନେ

Digitized by srujanika@gmail.com

ସକାଳେ ଉଭୟ ହାତୀ *ମେଳା* ଶିକାରରେ ଲାଗିଥାନ୍ତି, ସେତେବେଳେ ସେମାନେ ଘରଠାରୁ 120 କି.ମି. ଦୂରରେ ଥାଆନ୍ତି । ମାହୁନ୍ତ ପାଖର ଲୋକଟି ଏକ ବିଶାଳକାୟ ଦନ୍ତାହାତୀର ମୁଣ୍ଡକୁ ଫାଶ ଫିଙ୍ଗିଲା । ହାତୀଟି ଖୁବ୍ ଜୋର୍‌ରେ ଭିଡ଼ି ଓଟାରି ହେଲା । ଏହି ଟଣାରେ ସେହି ଲୋକ ଓ ମାହୁନ୍ତ ଉଭୟେ ତାଙ୍କ ହାତୀ ପିଠିରୁ ତଳକୁ ଗଡ଼ିପଡ଼ିଲେ । ଫାଶ ଦଉଡ଼ିଟି ଉଭୟ ହାତୀ (ବଣୁଆ ଓ ପୋଷା)ଙ୍କ ଦେହରେ ବନ୍ଧା ଥାଏ । ବଣୁଆ ହାତୀଟି ଆର ହାତୀଟିକୁ ଭିଡ଼ିନେଇ କୁଆଡ଼େ ଚାଲିଗଲା । ତାକୁ ଅଟକାଇବାର ଆଉ କୌଣସି ବାଟ ନ ଥିଲା । ପୋଷା ହାତୀଟି ହଜିଗଲା ।

କିନ୍ତୁ କଥାଟି ଏତିକିରେ ସରିଲା ନାହିଁ । ଏହି ଘଟଣାଟିର ପ୍ରାୟ ନଅ ମାସ ପରେ ପୋଷା ହାତୀଟି ଘରକୁ ଫେରିଆସି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲା । ତା' ଦେହରେ ଏ ଯାଏଁ ଦଉଡ଼ିଟି ଲାଗିଥିଲା ଓ ତା'ର ଦେହରେ ଏକ ବଡ଼ କ୍ଷତ ସୃଷ୍ଟି କରିଦେଇଥିଲା । ପ୍ରକୃତରେ କ'ଣ ହେଲା ନା ଦଉଡ଼ିଟି ଲାଗିଥିବା ଯାଏଁ ହାତୀ ଦୁଇଟି ଏକାଠି ରହିଥିଲେ । କିନ୍ତୁ ଦଉଡ଼ିଟି ଛିଡ଼ିଯିବା ପରେ ପୋଷାହାତୀଟି ଆଉ ଜଙ୍ଗଲରେ ଏପରି ଖୋଲା ଭାବରେ ବୁଲିବାକୁ ଚାହିଁଲା ନାହିଁ । ସେ ଏଥର ନିଜ ରାଇଜକୁ ଫେରି ଯିବାକୁ ଚାହିଁଲା । ସେଥିପାଇଁ ବିଭିନ୍ନ ଗାଁ ଓ ସମାଜକୁ ଟପି ପ୍ରାୟ 128 କି.ମି. ଦୂରତା ଅତିକ୍ରମ କରି ସେ ତା'ର ପୁରୁଣା ଘରକୁ ଲେଉଟି ଆସିଲା । ବୋଧହୁଏ ସେ ତା ଦେହରୁ ଦଉଡ଼ିଟିକୁ ବାହାର କରି ଦେବାକୁ ଚାହୁଁଥିଲା । ଏହା ତାକୁ ଯଥେଷ୍ଟ କଷ୍ଟ ଦେଉଥିଲା । ସେ ଜାଣିଥିଲା ଯେ ଏହା କରିବାରେ ତା' ମାଲିକମାନେ ହିଁ ତାକୁ ସାହାଯ୍ୟ କରିପାରିବେ ବା ସେ ଏପରି ଏକ ଜାଗା ଛାଡ଼ିବାକୁ ଚାହୁଁ ନ ଥିଲା । ଯେଉଁଠି ସେ ନିଜେ ଗତ 15 ବର୍ଷ କାଳ କଟାଇଥିଲା ।

ଗୌରୀପୁରର କୁମାରଙ୍କ ଦନ୍ତା ହାତୀଟି ବି ହଜିବାର ପାଞ୍ଚବର୍ଷ ପରେ ଆପେ ଆପେ ଘରକୁ ଫେରିଆସିଥିଲା । 1932ରେ ତାକୁ ଧରାଯିବା ସମୟରେ ତା' ବୟସ 15 ବର୍ଷ ଥିଲା । 1942ରେ ବଣୁଆ ହାତୀକୁ ଧରିବା କାମରେ ଲଗାଯାଇଥିଲାବେଳେ ସେ ଦଉଡ଼ି ପଳାଇଲା । ଧରି ନିଆଗଲା ଯେ ହାତୀଟି ହଜିଗଲା । ତେଣୁ ପାଞ୍ଚ ବର୍ଷ ପରେ ସେ ଯେତେବେଳେ ଘରକୁ ଲେଉଟି ଆସିଲା, ଏହା ତା'ର ମାଲିକ ଲାଲ୍‌ଜୀଙ୍କ ପାଇଁ ଏକ ଆଶ୍ଚର୍ଯ୍ୟଜନକ ଆନନ୍ଦ ଆଣିଦେଇଥିଲା । ଏହା କରିବା ପାଇଁ ସେ 75 କି.ମି ଦୂରତା ଅତିକ୍ରମ କରିଥିଲା । ତା'ର ଦାନ୍ତଗୁଡ଼ିକ ଆହୁରି ବଢ଼ିଯାଇଥିଲା । ତାକୁ ସାଙ୍ଗେ ସାଙ୍ଗେ ଅନ୍ୟ ହାତୀଙ୍କୁ ତାଲିମ ଦେବା କାମରେ ଲଗାଗଲା । ଖୁବ୍ ଶୀଘ୍ର ଜଣାପଡ଼ିଗଲା ସେ କିଛି ବି ଭୁଲି ନଥିଲା ।

ଆସାମର ଜଙ୍ଗଲ ବିଭାଗର ଦୁଇଟି ହାତୀ ଦଉଡ଼ି ପଳାଇବା ପରେ ପୁଣି ଘରକୁ ଫେରିଆସିଥିବାର ଉଦାହରଣ ରହିଛି । ଏଥିରୁ ଗୋଟିଏ ଥିଲା ଜଙ୍ଗଲ ସଂରକ୍ଷକ (କଞ୍ଜରଭେଟର୍ ଅଫ ଫରେଷ୍ଟସ୍)ଙ୍କ ପାଖରେ, ଯିଏ ଏହି ହାତୀଟି ଉପରେ ବସି ଆସାମର ଉତ୍ତର ଭାଗରେ ଶୀତକାଳୀନ ପରିଦର୍ଶନ କରୁଥିଲେ । ଦିନେ ତା ପିଠିରେ ବୁହାଯାଉଥିବା ପାଣି ଟାଙ୍କିରେ ଏକ ବିସ୍ଫୋରଣ ହୋଇଥିଲା । ହାତୀଟି ଏଥିରେ ଏତେ ଜୋର୍‌ରେ ଚମକି ପଡ଼ିଲା ଯେ, ସେ ମାହୁନ୍ତକୁ ତଳେ ପକାଇଦେଇ ଜଙ୍ଗଲକୁ ଦଉଡ଼ି ପଳାଇଲା । ସେତେବେଳେ

Digitized by srujanika@gmail.com

ତା ପିଠିରେ ଏକ ସଦ୍ୟ ଶିକାର କରାଯାଇଥିବା ହରିଣ ଓ ମଧ୍ୟାହ୍ନ ଭୋଜନ ବି ଲଦା ହୋଇଥିଲା । ଆପଣ ଏଥିରୁ ବୁଝିପାରିବେ ଯେ ସମସ୍ତେ କେତେ ଆଶ୍ଚର୍ଯ୍ୟ ହୋଇଥିବେ ଯେତେବେଳେ ଦିନେ ଏକ ସୁନ୍ଦର ସକାଳରେ ସେମାନେ ଦେଖିବାକୁ ପାଇଥିଲେ ତାକୁ ଆଗରୁ ବନ୍ଧା ହେଉଥିବା ଜାଗାରେ ହାତୀଟି ଠିଆ ହୋଇଛି ଓ ତା ପିଠିରେ ଖାଦ୍ୟ ଝୁଡ଼ିଟି ଏ ଯାଏଁ ବନ୍ଧା ହୋଇ ରହିଥିଲା !

ସୁନ୍ଦରମାଳା ନାମକ ଜଙ୍ଗଲ ବିଭାଗର ଗୋଟିଏ ମାଈ ହାତୀ ଥରକୁ ଥର ଘର ଛାଡ଼ି ଦଉଡ଼ି ପଳାଉଥିଲା । ପ୍ରତି ଥର ତାକୁ ଯେତେବେଳେ ଧରି ଅଣାଯାଉଥିଲା, ସେତେବେଳେ ତା' ସହିତ ଗୋଟିଏ ହାତୀ ଛୁଆ ବି ଆସୁଥିଲା । ଜଙ୍ଗଲରେ କୌଣସି ବଣୁଆ ଦନ୍ତା ହାତୀ ସଂପର୍କରେ ଆସିବା ପରେ ତା'ର ଏହି ଛୁଆ ଜନ୍ମ ନେଉଥିଲେ । ଜଙ୍ଗଲରୁ ଇସାରା ପାଇଲା କ୍ଷଣି ସେ ଆଉ ରହି ପାରୁ ନଥିଲା ଓ ସେହି ମୁହୂର୍ତ୍ତରେ ହିଁ ଜଙ୍ଗଲକୁ ଛୁଟି ଯାଉଥିଲା । ଷ୍ଟେସିଙ୍କ ପାଖରେ ଥିଲାବେଳେ ସେ ତୃତୀୟ ଥର ପାଇଁ ଏପରି ଖସି ପଳାଇଥିଲା । ଅନୁସନ୍ଧାନରୁ ଜଣାପଡ଼ିଲା ଯେ, ଏଥର ତାକୁ ଯେଉଁ ଶିକୁଳିରେ ବନ୍ଧା ଯାଇଥିଲା, ସେଥିରେ କେତେକ ଭୁଲଭଟକା ଥିଲା ଏବଂ ମାହୁନ୍ତଟି ବିଭାଗୀୟ କର୍ମକର୍ତ୍ତାଙ୍କୁ ଏହି ଅସୁବିଧାଟି ଜଣାଇବାର ଅବହେଳା କରିଥିଲା ।

ଅନେକ ଦିନ ଧରି ହାତୀଟିକୁ ଖୋଜା ଚାଲିଲା । ସଂରକ୍ଷିତ ଜଙ୍ଗଲଟିରେ ଅନେକ ବଣୁଆ ହାତୀ ରହିଥିଲେ । ଏମାନଙ୍କ ମଧ୍ୟରେ ଏହି ହଜିଲା ହାତୀଟିକୁ ଠାବ କରିବା ସମ୍ଭବପର ନ ଥିଲା । ଏହା ଥିଲା 1933 ମସିହାର କଥା । ତା'ପରେ 1947 ମସିହାରେ, ଏହାର 14 ବର୍ଷ ପରେ, ସେ ଗୋଟିଏ *ମେଳା* ଶିକାରରେ ଧରାପଡ଼ିଲା । *ମେଳା* ଶିକାରରେ ଲାଗିଥିବା ଦଳେ ତାଲିମପ୍ରାପ୍ତ ହାତୀ ଦୁଇଟି ହାତୀ ଛୁଆ ସହ ତା' ମାଆକୁ ପାଇ ଘେରିଗଲେ । ଛୁଆଙ୍କ ଭିତରୁ ସାନଟି ଏ ଯାଏଁ ମାଆଠାରୁ ଦୁଧ ଖାଉଥିଲା । କିନ୍ତୁ ମାଆ ହାତୀଟି ଜମା ନ ଡରିବା ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଏ ସମୟରେ ଜଣେ ଶିକାରୀର ମୁଣ୍ଡକୁ ଗୋଟିଏ ଧାରଣା ଆସିଲା ଯେ ସେ ହୁଏତ ସେହି ହଜିଲା ହାତୀଟି ହେଇଥାଇପାରେ । 'ବସ, ବସ', ସେ ଆଦେଶ ଦେଲା ଓ ଆଶ୍ଚର୍ଯ୍ୟଜନକ ଭାବରେ ହାତୀଟି ତା' କଥା ଶୁଣି ସେପରି କଲା । ସେ ଏ ଯାଏଁ ଆଦେଶ ଶବ୍ଦଗୁଡ଼ିକ ଭୁଲି ନ ଥିଲା । ଜଣେ ହାତୀ ଧରାଳୀ ନିଜ ହାତୀ ପିଠିରୁ ଓହ୍ଲାଇ ଏହି ହାତୀଟି ପାଖକୁ ଦଉଡ଼ିଗଲା ଓ ତା' କାନକୁ ଧରି ତା'ପିଠିକୁ ଉଠିଗଲା । ଏହି ସମୟରେ ଗୋଟିଏ ହାତୀ ଛୁଆ ସେଠାରୁ ଦଉଡ଼ି ପଳାଇଲା । କିନ୍ତୁ ଦୁଧଖିଆ ଛୁଆଟି ମା' ପଛେ ପଛେ କେନ୍ଦ୍ରକୁ ଚାଲିଲା । ଏହି ହାତୀଟିର ବାହୁଡ଼ାକୁ ଦେଖି କେନ୍ଦ୍ରରେ ଆନନ୍ଦର ଶିହରଣ ଖେଳିଗଲା । ତାକୁ କେହି କେହି ବୋକୀ, ଡରୁଆ ଆଦି କହିଲେ । ଆଉ କେହି କେହି ଧରାଳୀର ବହୁତ ପ୍ରଶଂସା କଲେ । ତା'ର ଇତିହାସ-ପୃଷ୍ଠାରେ ଲେଖା ଯାଇଥିବା ତା'ର ଦେହର ଦାଗ ଗୁଡ଼ିକ ସହିତ ମିଳାଇନେବା ପରେ ଏହା ପ୍ରମାଣିତ ହୋଇଗଲା ଯେ ହାତୀଟି ସୁନ୍ଦରମାଳା ଛଡ଼ା ଆଉ କେହି ନୁହେଁ । ତା' ଛୁଆଟିର ନାମ ରଖାଗଲା ରୂପାହୀ । 1951 ମସିହାରେ ଭାରତୀୟ ପ୍ରଧାନମନ୍ତ୍ରୀ ନେହରୁଙ୍କ ଠାରୁ ଏହାକୁ ଜାପାନ ସରକାରଙ୍କୁ

Digitized by srujanika@gmail.com

ଏକ ଉପହାର ରୂପେ ଜାପାନ ପଠାଇ ଦିଆଗଲା । ମା' ଝିଅଙ୍କର ବିଦାୟ ବେଳାଟି ଅତ୍ୟନ୍ତ ହୃଦୟ ବିଦାରକ ଥିଲା । ଆଉ ଏକ ମାଈ ହାତୀ ଖସି ପଳାଇବାର 12 ବର୍ଷ ପରେ ଏହାକୁ ପୁଣି ଧରାଯାଇଥିଲା । ସେ ଆଉ 48ଟି ହାତୀଙ୍କ ଦଳରେ ବୁଲୁଥିଲା ଓ ତା' ପାଖରେ ତିନୋଟି ଛୁଆ ଥିଲେ । ତା' ଗୋଡ଼ରେ ରହିଥିବା ଶିକୁଳି ବନ୍ଧା ଦାଗକୁ ଦେଖି ତାକୁ ଚିହ୍ନା ଯାଇ ପାରିଥିଲା । ତାକୁ ଯେତେବେଳେ ବସିବା ପାଇଁ ଆଦେଶ ଦିଆଗଲା, ସେ ସାଙ୍ଗେ ସାଙ୍ଗେ ଆଦେଶ ପାଳନ କଲା ।

ତିନି ବର୍ଷ ଆଗରୁ ଧରାଯାଇଥିବା ଗୋଟିଏ ତାଲିମପ୍ରାପ୍ତ ମାଈ ହାତୀ ଏହି *ଖେଦା* ସମୟରେ ତରଳିଗଲା ଓ ସେଠାରୁ ଦଉଡ଼ି ପଳାଇଗଲା । ଏହି *ଖେଦା* ସମୟରେ ଗୋଟିଏ ଛୁଆ ଓ 20ଟି ଅନ୍ୟ ହାତୀ ଧରା ପଡ଼ିଥିଲେ । କିନ୍ତୁ ସେ ଏତେ ନମ୍ର ଥିଲା ଯେ ମାତ୍ର ତିନିଦିନ ମଧ୍ୟରେ ସେ ଫେରିଆସି ପୁଣି ବଣୁଆ ହାତୀ ଧରିବା କାମରେ ଲାଗିପଡ଼ିଲା ।

ଆସାମରେ କୌଣସି ଅସ୍ଥିର ହାତୀକୁ ପୁଣି ଧରାଯିବାର କୌଣସି ନୂତନତ୍ୱ ନ ଥାଏ । କିନ୍ତୁ ଅଧିକାଂଶ ସମୟରେ ଏପରି ହାତୀଟିକୁ ପାଇଲେ ଏହାର ମାଲିକଙ୍କୁ ଠାବ କରିବା ଜଙ୍ଗଲ ବିଭାଗ ପାଇଁ ମୁଣ୍ଡ ବିନ୍ଧାର କାରଣ ବନିଯାଇଥାଏ । ପଚାଶ ବର୍ଷ ତଳେ ଏପରି ଏକ ଘଟଣାରେ ଗୋଟିଏ କୋର୍ଟ ରାୟ ଦେଇଥିଲା ଯେ ଧରାଯାଇଥିବା ହାତୀଟି ଧରାଳୀଙ୍କର ହିଁ ହେବ । ଜଜ୍ ଗୋଟିଏ ରୋମାନ୍ କଥାକୁ ଉଦ୍ଧାର କରି କହିଥିଲେ ଯେ ପ୍ରକୃତିର ଆକାଶ, ମାଟି ଓ ପାଣିରେ ସୃଷ୍ଟି ହୋଇଥିବା ପଶୁ, ପକ୍ଷୀ ଓ ମାଛଙ୍କୁ ଯିଏ ଧରେ ସେମାନେ ତା'ର ସମ୍ପତ୍ତି ବନିଯାଆନ୍ତି, କାରଣ ଧରାଯିବା ପୂର୍ବରୁ ସେମାନେ କାହାର ନ ଥିଲେ । ପଶୁଟିଏ ଜଣଙ୍କ ପାଖରେ ଥିଲା ଯାଏଁ ସେ ତାଙ୍କର ସମ୍ପତ୍ତି ବୋଲି ଧରାଯାଇଥାଏ । ପଶୁଟିଏ ମୁକ୍ତ ଥାଇ ନିଜର ପ୍ରାକୃତିକ ସ୍ୱାଧୀନତାକୁ ଉପଭୋଗ କରୁଥିଲେ ତା'ଉପରେ କାହାର ବି ଅଧିକାର ନଥାଏ । ସେହିପରି ଅସ୍ଥିର ପଶୁଟିଏ, ପୁଣି ଧରାହେଲେ, ଆଗରୁ କାହାର ଥିଲା ବୋଲି ଚିହ୍ନାଗଲେ ମଧ୍ୟ ଏହାକୁ ତାର ପୂର୍ବ ମାଲିକଙ୍କୁ ଫେରାଇବା କାହାର ଦାୟିତ୍ୱ ନୁହେଁ । ଅବଶ୍ୟ ଆଉ ନିୟମ କହେ ଯେ, ସରକାରଙ୍କର କୌଣସି ହାତୀ ଯଦି ପୁଣି ଧରାପଡ଼େ ଓ ଏହା ସରକାରଙ୍କର ବୋଲି ପ୍ରମାଣିତ ହୋଇଯାଏ, ତେବେ ଏହା ସରକାରଙ୍କୁ ଫେରାଇ ଦିଆଯିବ, କାରଣ ଏହାକୁ ଧରିବା ପାଇଁ କରାଯାଇଥିବା ଖର୍ଚ୍ଚ ସରକାର ବହନ କରିଥାନ୍ତି ।

Digitized by srujanika@gmail.com

# 7

# ବାଣିଜ୍ୟ ଓ ବ୍ୟବସାୟରେ ହାତୀ

**ଧଳା ହାତୀ**

ଗୌତମ ବୁଦ୍ଧଙ୍କ ମାଆ, ରାଣୀ ମହାମାୟା ସ୍ୱପ୍ନରେ ଦେଖିଲେ ଯେ ଗୋଟିଏ ଧଳା ହାତୀ ତାଙ୍କ ଦେହ ଭିତରେ ପ୍ରବେଶ କରିଛି । ରାଜ ଜ୍ୟୋତିଷମାନେ କହିଲେ ଏଥିରୁ ସୂଚନା ମିଳୁଛି ଯେ ରାଣୀଙ୍କ ଗର୍ଭରୁ ଜାତ ସନ୍ତାନ ଜଣେ ମହାନ୍ ରାଜା ବା ମହାନ୍ ଋଷି ହୋଇପାରେ । ଭର୍‌ହଟ୍ (ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକ) ଠାରେ ଥିବା ଗୋଟିଏ ସ୍ତୂପରେ ଏହି କାହାଣୀଟି ଲେଖାଅଛି ।



Digitized by srujanika@gmail.com

ଏସିଆରେ ଗୋଟିଏ ଧଳାହାତୀକୁ ଯଥେଷ୍ଟ ସମ୍ମାନ ଦେଖାଯାଇଥାଏ । ହିନ୍ଦୁମାନେ ଭାବନ୍ତି, ଏ ହେଉଛି ରାଜା ଇନ୍ଦ୍ରଙ୍କ ବାହନ ଐରାବତ । ବାଲ୍ମୀକି ଏକ ଧଳାହାତୀର କଳ୍ପନା କରିଥିଲେ ଯିଏ କୈଳାଶ ପର୍ବତ ପରି ଉଜ୍ଜ୍ୱଳ ଥିଲା । ତା'ର ଚାରିଟି ଦାନ୍ତ ଥିଲା । ତା' ଦେହରେ ନାହିଁ ନ ଥିବା ଅଳଙ୍କାର ଓ ମଧୁର ଶବ୍ଦ ସୃଷ୍ଟି କରୁଥିବା ଘଣ୍ଟି ସବୁ ଲାଗିଥିଲା ।

ଗୋଟିଏ କାହାଣୀ ଅନୁସାରେ, ବୋଧିସତ୍ତ୍ୱ ତାଙ୍କର ଗୋଟିଏ ଅବତାରରେ ବିଶ୍ୱନ୍ତରା ନାମକ ଜଣେ ରାଜକୁମାର ଥିଲେ । ସେ ଗୋଟିଏ ହାତୀ ଚଢୁଥିଲେ ଯିଏ ହିମାଳୟ ପର୍ବତ ପରି ସଫା ଧଳା ଥିଲା, ସୁଗଠିତ ଥିଲା, ତା' ମୁଖମଣ୍ଡଳ ମସ୍ତ ରସରେ ଓଦା ହୋଇଯାଇଥିଲା, ସେ ଧୀର ମନ୍ଥର ଗତିରେ ଚାଲୁଥିଲା ଓ ବଳିଷ୍ଠ ଥିଲା । ଏହି ହାତୀଟିର ନାମ ଗନ୍ଧହସ୍ତୀ । ରାଜକୁମାର ଏହାକୁ ଚଢ଼ି ରାଜ୍ୟସାରା ବୁଲୁଥିଲେ ଓ ତାଙ୍କର ସେବା କେନ୍ଦ୍ରସବୁକୁ ଯାଉଥିଲେ । ଥରେ ପଡ଼ୋଶୀ ଦେଶର ଜଣେ ରାଜା ରାଜକୁମାର ବିଶ୍ୱନ୍ତରାଙ୍କୁ ଏକ ଶିକ୍ଷା ଦେବାକୁ ଯୋଜନା କଲେ । କାରଣ ଜଣେ ଦୟାବାନ ଶାସକ ହିସାବରେ ରାଜକୁମାରଙ୍କ ପ୍ରଶସ୍ତି ଏତେ ଶୀଘ୍ର ବଢ଼ିଚାଲିଥିଲା ଯେ ସେ ଏହାକୁ ସହି ପାରୁନଥିଲେ । ରାଜକୁମାରଙ୍କ ଠାରୁ ହାତୀଟିକୁ ନେଇ ଆସିବା ପାଇଁ ସେ କେତେଜଣ ବ୍ରାହ୍ମଣଙ୍କୁ ରାଜକୁମାରଙ୍କ ପାଖକୁ ପଠାଇଲେ । ବ୍ରାହ୍ମଣମାନେ ଆସି ଉଚ୍ଚସ୍ୱରରେ ଆଶୀର୍ବାଦ ପ୍ରଦାନ କରି ରାଜକୁମାରଙ୍କୁ କହିଲେ ଯେ ସେମାନେ ତାଙ୍କ ଚମତ୍କାର ହାତୀର ଗୁଣ ସବୁ ଓ ତାଙ୍କର ଦୟାଶୀଳତା ବିଷୟରେ ଶୁଣି ତାଙ୍କ ପାଖକୁ ଆସିଛନ୍ତି । ଏଥର ସେମାନେ ରାଜକୁମାରଙ୍କୁ ଦାନ ରୂପେ ତାଙ୍କ ହାତୀଟି ଭିକ୍ଷା କଲେ । ରାଜକୁମାର ଜାଣି ସାରିଥିଲେ ଯେ ତାଙ୍କୁ ଈର୍ଷା କରୁଥିବା ପଡ଼ୋଶୀ ରାଜାଙ୍କ ପ୍ରରୋଚନାରେ ଏହି ବ୍ରାହ୍ମଣମାନେ ତାଙ୍କୁ ହାତୀଟି ମାଗୁଛନ୍ତି । ତଥାପି ସେ ସାଙ୍ଗେ ସାଙ୍ଗେ ହାତୀ ପିଠିରୁ ଓହ୍ଲାଇପଡ଼ିଲେ । ଗୋଟିଏ ହାତରେ ଏକ ଜଳପୂର୍ଣ୍ଣ ସ୍ୱର୍ଣ୍ଣ କଳସ ଓ ଆର ହାତରେ ହାତୀର ଶୁଣ୍ଢକୁ ଧରି ସେ ବ୍ରାହ୍ମଣମାନଙ୍କ ଆଗରେ ବିନୟର ସହ ଠିଆ ହେଲେ ଓ ବିନମ୍ର ହୋଇ କହିଲେ, 'ଦୟା ପୂର୍ବକ ଆପଣମାନେ ଏହି ଉପହାର ଗ୍ରହଣ କରନ୍ତୁ ।' ଏତିକି କହି ସେ ହାତୀଟିକୁ ଅର୍ପଣ କରିଦେଲେ । କିନ୍ତୁ ରାଜ୍ୟବାସୀ ଏହି ନିଷ୍ପତ୍ତିଟିକୁ ଖୁବ୍ ସମାଲୋଚନା କଲେ । ସେମାନଙ୍କ ଆଖିରେ ଏଇ ହାତୀଟି ହିଁ ରାଜ୍ୟର ମାନସମ୍ମାନ ନିର୍ଭର କରୁଥିଲା । ସେମାନେ କହିଲେ ବ୍ରାହ୍ମଣଙ୍କୁ ଗାଈ, ସୁନା, ଖାଦ୍ୟ, ବସ୍ତ୍ର ଆଦି ଦିଆଯାଇ ପାରିଥାଆନ୍ତା । କିନ୍ତୁ ଧଳା ହାତୀଟି ଦେଇଦେବା ଜମା ଠିକ୍ କଥା ନୁହେଁ । କ୍ରମଶଃ ଲୋକଙ୍କ ଅସନ୍ତୋଷ ଏତେ ବଢ଼ିଗଲା ଯେ ରାଜକୁମାରଙ୍କୁ ଶେଷରେ ନିର୍ବାସନ ଯିବାକୁ ପଡ଼ିଲା । ଏହି ଦୃଶ୍ୟଟିକୁ ଭର୍‌ହଟ୍‌ଠାରେ ଥିବା ପଥର ଖୋଦେଇରେ ସୁନ୍ଦର ଭାବେ ଅଙ୍କାଯାଇଛି ।

ଗୋଟିଏ ଧଳା ବାଘ ଓ ଧଳା ଅଜଗର ପରି ଧଳା ହାତୀ ମଧ୍ୟ ପ୍ରକୃତିର ଏକ ଖିଆଲ । କେବଳ ଧଳା ହାତୀମାନେ ପୂରାପୂରି ବିରଳ ନୁହନ୍ତି । ପ୍ରାଚୀନ ଭାରତରେ ହାତୀ ପାଳକମାନେ ଧଳା ହାତୀମାନଙ୍କର ଯଥେଷ୍ଟ ଯତ୍ନ ନେଉଥିଲେ । ବାଲ୍ମୀକି ଉଲ୍ଲେଖ କରିଛନ୍ତି, ରାବଣର ହାତୀଶାଳରେ ଏପରି କେତେଗୁଡ଼ିଏ ହାତୀ ରହିଥିଲେ ଯେଉଁମାନଙ୍କ ରଙ୍ଗ ଧଳା ମେଘ ସହ ମିଶିଯାଉଥିଲା । 1961 ମସିହାରେ ଦକ୍ଷିଣ ଭିଏତ୍‌ନାମ୍‌ରେ ବେଗେଥୁ ଓଟ୍‌ର

Digitized by srujanika@gmail.com

ପାଖରେ ଥିବା କେନ୍ଦ୍ରୀୟ ଅଞ୍ଚଳରେ ଗୋଟିଏ ଧଳା ହାତୀକୁ ଧରାଯାଇଥିଲା । ଭିଏତ୍‌ନାମ୍‌ର ଲୋକମାନେ ବିଶ୍ୱାସ କରିଥାନ୍ତି ଯେ ଧଳା ହାତୀ ହେଉଛନ୍ତି କୌଣସି ଖଗୋଳ ସମ୍ରାଟଙ୍କର ଅବତାର ଅଟନ୍ତି ।

ଉତ୍ତର ଥାଇଲାଣ୍ଡରେ ଧରାଯାଇଥିବା ଗୋଟିଏ ଧଳା ହାତୀକୁ ରାଜାଙ୍କ ହାତୀଶାଳକୁ ନେବାବେଳେ ଏହାର ଯାତ୍ରାଟି ବେଶ୍ ମଉଜିଆ ହୋଇଥିଲା । ଜଙ୍ଗଲରୁ ନଦୀ ଯାଏଁ ସେମାନେ ଏକ ଚଉଡ଼ା ରାସ୍ତା ବନାଇଥିଲେ । ହାତୀଟିକୁ ଏହି ବାଟରେ ନଦୀ ଯାଏଁ ନିଆଯାଇଥିଲା । ସେଠାରେ ତାକୁ ସ୍ୱାଗତ କରିବା ପାଇଁ ଗୋଟିଏ ଭସାଘର ଅପେକ୍ଷା କରି ରହିଥିଲା । ଏହାର ଛାତଟି ଚାଲରେ ତିଆରି ହୋଇଥିଲା ଓ ଘର ଚାରିପାଖରେ ଲାଲ୍ ପରଦା ଟଙ୍ଗାଯାଇଥିଲା । ଏହି ଯାତ୍ରାଟି ବେଶ୍ ଲମ୍ବା ଓ କ୍ଳାନ୍ତିକର ଥିଲା । ହାତୀଟି ଯେତେବେଳେ ବିଶ୍ରାମ ନେବାକୁ ଚାହୁଁଥିଲା, ଦଳେ ସଙ୍ଗୀତଜ୍ଞ ଓ ନର୍ତ୍ତକନର୍ତ୍ତକୀ ତା'ର ମନୋରଞ୍ଜନ କରୁଥିଲେ । ସେ ଯେତେବେଳେ ଡଙ୍ଗାରୁ ଓହ୍ଲାଇଲା ତା ପାଦତଳେ ସୁନା ଲାଗିଥିବା ଗୋଟିଏ ଗାଲିଚା ବିଛାଯାଇଥିଲା । ମଲ୍ଲୀ ଫୁଲରେ ସୁବାସିତ ଜଳରେ ତାକୁ ଗାଧୋଇ ଦିଆଗଲା । ତା'ପରେ ତାକୁ ପ୍ରଚୁର ପରିମାଣର ଧାନ ପିଠା ଓ ଆଖୁ ଖାଇବାକୁ ଦିଆଯାଇଥିଲା । ତାକୁ ସ୍ୱାଗତ କରିବା ପାଇଁ ରାଜା, ମନ୍ତ୍ରୀ, ପାରିଷଦ ଓ ପୂଜକମାନେ ଯାଇଥିଲେ । ବ୍ୟାଙ୍କକ୍‌ରେ ପହଞ୍ଚିଲା ପରେ, ହାତୀଟିକୁ ଏକ ସୁସଜ୍ଜିତ ମଣ୍ଡକୁ ନିଆଯାଇଥିଲା । ଏହା ଦେହରେ ତେଲ ଲଗାଯାଇଥିଲା ଓ ସୁନାହାର ଲଗାଇ ତାକୁ ସଜାଇ ଦିଆଯାଇଥିଲା । ନଅଦିନ ଯାଏଁ ତାକୁ ଲୋକମାନେ ଅନେକ ଜିନିଷ ଅର୍ପଣ କରିଥିଲେ ଓ ପୂଜା କରିଥିଲେ । ଶେଷରେ ତାକୁ ରାଜାଙ୍କ ହାତୀଶାଳକୁ ନିଆଯାଇଥିଲା ।

1966 ଅଗଷ୍ଟ ମାସରେ ଗୋଟିଏ ଧଳା ହାତୀ ଏକ ଦୁର୍ଘଟଣାର ଶିକାର ହୋଇଥିଲା । ଥାଇଲାଣ୍ଡ୍ ସରକାର ଏହି ହାତୀଟିକୁ ଆମେରିକାର ରାଷ୍ଟ୍ରପତି ଜନ୍‌ସନ୍‌ଙ୍କୁ ଉପହାର ଦେଇଥିଲେ । ତାକୁ ଆମେରିକା ନିଆଯାଉଥିଲା । ଡଙ୍ଗାରେ ସେ ବିଗିଡ଼ିଗଲା ଓ ଦୁଷ୍ଟାମୀ ଆରମ୍ଭ କରିଦେଲା । ଫଳରେ ଡଙ୍ଗାଟି ବୁଡ଼ିଗଲା ।

ମିଆଁମାର୍‌ର ଜଙ୍ଗଲରେ ବେଳେ ବେଳେ ଧଳା ହାତୀ ମିଳିଥାନ୍ତି । ଥାଇଲାଣ୍ଡ୍ ପରି ସେଠାରେ ବି ଏକଦା ସେମାନଙ୍କୁ ସେତିକି ଆଡ଼ମ୍ବରପୂର୍ଣ୍ଣ ଭାବରେ ସ୍ୱାଗତ କରାଯାଉଥିଲା । ରାଜକୁମାର ଓ ସଭାପାରିଷଦମାନେ ସେମାନଙ୍କର ଯତ୍ନ ନେଉଥିଲେ । ନାଲି ରେଶମ ଜନାରେ ତିଆରି ଦଉଡ଼ିରେ ସେମାନଙ୍କ ଗୋଡ଼କୁ ଖୁଣ୍ଟ ସହିତ ବନ୍ଧା ଯାଉଥିଲା । ସୁନା ଓ ରୂପା ପାତ୍ରରେ ତାଙ୍କୁ ଖାଦ୍ୟ ପରଶାଯାଉଥିଲା ।

ଜାତକ କାହାଣୀରେ ଧଳା ହାତୀଙ୍କ ବିଷୟରେ ଅନେକ କଥା ଲେଖାଅଛି । ଏହି କାହାଣୀଗୁଡ଼ିକ ଭାର୍‌ହଟ୍ ଓ ସାଞ୍ଚିର ପଥର ଖୋଦେଇରେ ଆଙ୍କି ହୋଇ ରହିଛି । ଅଜନ୍ତାର ଗୋଟିଏ ମୂର୍ତ୍ତିରେ ସାଧାରଣ ରଙ୍ଗର ମାଈ ହାତୀଟିଏ କଡ଼ରେ ଦୁଇଟି ଧଳା ହାତୀ ଛୁଆ ଠିଆ ହୋଇଛନ୍ତି । ଆଉ ଏକ ଗୁମ୍ଫାରେ ଗୋଟିଏ ଛଅଦାନ୍ତ ବିଶିଷ୍ଟ ହାତୀ ପାଖରେ ଧଳା ହାତୀଛୁଆ ଅଛି । ଗୋଟିଏ ବୋଧିସତ୍ତ୍ୱ କାହାଣୀରେ ଧଳା ହାତୀ କଥାକୁ ନେଇ ଜଣେ ପୁଅର

Digitized by srujanika@gmail.com

ତା' ମା' ପ୍ରତି ଆଦର ସମ୍ପର୍କରେ କୁହାଯାଇଛି । କାହାଣୀଟି ଏହିପରି :

ସେତେବେଳେ ରାଜା ବ୍ରହ୍ମଦତ୍ତ ବାରଣାସୀକୁ ଶାସନ କରୁଥିଲେ । ବୋଧିସତ୍ତ୍ୱ ଏକ ଧଳା ହାତୀ ରୂପରେ ହିମାଳୟରେ ଜନ୍ମଲାଭ କରିଥିଲେ । ତାଙ୍କ ମା' ଅନ୍ଧୁଣୀ ଥିଲେ । ଥରେ ସେ ଜଙ୍ଗଲରେ ବାଟ ହରାଇଥିବା ଜଣେ ଲୋକକୁ ଉଦ୍ଧାର କରିଥିଲେ । ସେ ତାକୁ ନିଜ ପିଠିରେ ବସାଇ ତାକୁ ନେଇ ଜଙ୍ଗଲ ବାହାରେ ଛାଡ଼ିଦେଲେ । ସେହି ସମୟରେ ହିଁ ରାଜାଙ୍କର ହାତୀଟି ମରିଯାଇଥିଲା । ସେ ତା' ଜାଗାରେ ଆଉ ଗୋଟିଏ ହାତୀ ପାଳିବାକୁ ଚାହିଁଲେ । ବୋଧିସତ୍ତ୍ୱ ଜଙ୍ଗଲରୁ ଉଦ୍ଧାର କରିଥିବା ଲୋକଜଣଙ୍କ ରାଜାଙ୍କୁ ବୋଧିସତ୍ତ୍ୱ ବିଷୟରେ କହିଲା । ଦଳେ ହାତୀ ଧରାଳୀଙ୍କୁ ପଠାଗଲା ଜଙ୍ଗଲରୁ ଧଳା ହାତୀଟିକୁ ଧରି ଆଣିବା ପାଇଁ । ବୋଧିସତ୍ତ୍ୱ ସେମାନଙ୍କୁ ଧରା ଦେଇଦେଲେ । ତାକୁ ରାଜାଙ୍କ ହାତୀଶାଳକୁ ନିଆଗଲା । ତାକୁ ଖାଇବାକୁ ଦିଆଗଲା; କିନ୍ତୁ ସେ କିଛି ବି ଛୁଇଁଲେ ନାହିଁ । ସେ କହିଲେ, 'ମୋ ମାଆକୁ ଛାଡ଼ି ମୁଁ କିଛି  ଖାଇବି ନାହିଁ ।' ରାଜା ଯେତେବେଳେ ବୋଧିସତ୍ତ୍ୱଙ୍କ ଅନ୍ଧ ଓ ଅସହାୟ ମାଆ ବିଷୟରେ ଶୁଣିଲେ ସେ ବି ଏଥିରେ ତରଳିଗଲେ । ବୋଧିସତ୍ତ୍ୱଙ୍କୁ ଛାଡ଼ିଦେବା ପାଇଁ ସେ ନିର୍ଦ୍ଦେଶ ଦେଲେ ।

ଖୁବ୍ ବିରଳ କ୍ଷେତ୍ରରେ ଧଳାହାତୀଟିଏ ପୂରାପୂରି ଧଳା ରଙ୍ଗର ହୋଇଥାଏ । ଏମାନଙ୍କ ରଙ୍ଗ ସାଧାରଣତଃ ଈଷତ୍ ଗୋଲାପୀ ହୋଇଥାଏ । 1926 ମସିହାର ଏପରି ଏକ ହାତୀ ଲ୍ରୁଆକୁ ଲଣ୍ଡନ ଚିଡ଼ିଆଖାନାକୁ ଅଣାଯାଇଥିଲା । ତାକୁ ମିଆଁମାର୍‌ର ଜଙ୍ଗଲରୁ ଧରାଯାଇଥିଲା । ମୋଗଲ ରାଜତ୍ୱ ସମୟରେ ବି ଧଳା ହାତୀ ଥିବାର ଉଲ୍ଲେଖ କରାଯାଇଛି । ରାଜା ମାନସିଂହ ଆକବରଙ୍କୁ କଥା ଦେଇଥିଲେ ଯେ ସେ ଆରାକାନ୍‌ର ଶାସକଙ୍କୁ ପରାସ୍ତ କରିବେ ଓ ଆକବରଙ୍କ ପାଇଁ ତାଙ୍କର ଧଳା ହାତୀଟି ଆଣିଦେବେ ।

ଏକ ପବିତ୍ର ଜୀବ ରୂପେ ଗଣାଯାଉଥିବାରୁ ସେତେବେଳେ କେହି ଏହା ଉପରେ ବସୁ ନ ଥିଲେ । ଲୋକେ ବିଶ୍ୱାସ କରୁଥିଲେ, ଯେଉଁ ଦେଶରେ ଧଳା ହାତୀ ଥାଏ, ସେଠାରେ ପ୍ରଚୁର ବର୍ଷା ହୁଏ, ପ୍ରଚୁର ଧନସମ୍ପତ୍ତି ଓ ସମୃଦ୍ଧି ଥାଏ । ରାଜାମାନେ ପାଖରେ ଧଳା ହାତୀ ରଖିବାକୁ ଭଲ ପାଉଥିଲେ । ଧଳାହାତୀଙ୍କ ଦ୍ୱାରା ଯେହେତୁ କିଛି କାମ କରାଯାଉନଥିଲା, ତେଣୁ ଏମାନଙ୍କୁ ରଖିବା ବହୁତ ଖର୍ଚ୍ଚସାପେକ୍ଷ ବି ହେଉଥିଲା । ଏଥିଯୋଗୁଁ କୌଣସି ଅଦରକାରୀ ଜିନିଷ ବା ଅନୁଷ୍ଠାନକୁ ଧଳା ହାତୀ ବୋଲି କୁହାଯାଇଥାଏ ।

## ହାତୀ ସଂଖ୍ୟା ନିୟନ୍ତ୍ରଣ

1979 ମସିହାରେ ଡଗ୍‌ଲାସ ହାମିଲ୍‌ଟନ୍ ସୂଚନା ଦେଇଥିଲେ ଯେ ସେତେବେଳେ 35ଟି ଆଫ୍ରିକୀୟ ଦେଶରେ ମୋଟରେ 1,343,340ଟି ହାତୀ ଥିଲେ ।

1962ରେ କେନିଆର ସଂରକ୍ଷିତ ଜଙ୍ଗଲରେ 11,000 ବଣୁଆ ହାତୀ ଥିଲେ । ସେଠାକାର ସରକାର ହିସାବ କରି କହିଲେ ଯେ ଜଙ୍ଗଲର ସମ୍ଭଳ ଅନୁପାତରେ ସେଠାରେ ଯେତେ ହାତୀ ରହିପାରିବା କଥା, ଏବେ ସେଠାରେ ତା'ର ଦୁଇଗୁଣ ହାତୀ ଅଛନ୍ତି । ତେଣୁ

Digitized by srujanika@gmail.com

ସେଠାରେ 5,000 ହାତୀଙ୍କୁ ଗୁଳି କରି ମାରିଦେବା ପାଇଁ ପ୍ରସ୍ତାବ ଦିଆଗଲା ।

ଖବରକାଗଜ ରିପୋର୍ଟ ଅନୁସାରେ ମାର୍ଚ୍ଚ 1995 ବେଳକୁ ଜିମ୍ବାଓ୍ୱେର ଜାତୀୟ ପାର୍କଗୁଡ଼ିକରେ 70,000ରୁ 80,000 ହାତୀ ଥିଲେ । ସେହି ପାର୍କଗୁଡ଼ିକର କ୍ଷମତା କିନ୍ତୁ 30,000ରୁ 45,000 ହାତୀ ରଖିବା ଥିଲା । ତେଣୁ ଏମାନଙ୍କ ସଂଖ୍ୟା କମାଇବା ପାଇଁ ସରକାର 36,000 ହାତୀଙ୍କୁ ବିକି ଦେବାର ନିଷ୍ପତ୍ତି ନେଲେ । ସେମାନଙ୍କୁ ବିକି ନ ପାରିଲେ, ଗୁଳି କରି ମାରିବା ଛଡ଼ା ସରକାର ଆଗରେ ଆଉ ଦ୍ୱିତୀୟ ବିକଳ୍ପ କିଛି ନ ଥିଲା ।

ଏକଦା ପର୍ତ୍ତୁଗୀଜ-ଆଫ୍ରିକାରେ 2,254 ହାତୀଙ୍କୁ ଗୁଳି କରି ମାରି ସେମାନଙ୍କ ମୂଲ୍ୟବାନ ଦାନ୍ତ ସବୁକୁ ବାହାର କରି ନିଆଯାଇଥିଲା । ପ୍ରାୟ 26 ବର୍ଗ କି.ମି. କ୍ଷେତ୍ରଫଳ ବିଶିଷ୍ଟ ଜାଗାରେ ତାର ଜାଲି ଲଗାଇ ଶିକାରୀମାନେ ରାତିକ ମଧ୍ୟରେ ହାତୀମାନଙ୍କୁ ଧରିନେଇଥିଲେ ।

ଶ୍ରୀଲଙ୍କାରେ ସମସ୍ୟାଟି ଅନ୍ୟ ରକମର ଥିଲା । ଗୋଟିଏ ସମୟରେ ଏଠାରେ 10,000 ହାତୀ ଥିଲେ । ପର ସମୟରେ ଏହା 800କୁ ଖସି ଆସିଥିଲା । ଏହି ବିପର୍ଯ୍ୟୟରେ ବ୍ୟସ୍ତ ହୋଇ ସରକାର ସେମାନଙ୍କ ସୁରକ୍ଷା ଦିଗରେ ପଦକ୍ଷେପମାନ ନେଲେ ଓ ହାତୀ ଶିକାର ଉପରେ କଡ଼ା କଟକଣା ଜାରି କଲେ । ସୁରକ୍ଷା ପାଇବାରୁ ଜଙ୍ଗଲରେ ହାତୀଙ୍କ ସଂଖ୍ୟା ପୁଣି ବଢ଼ିଚାଲିଲା । 1978 ମସିହାରେ ଆର୍. ଅଲିଭିଏର୍ ସୂଚାଇଥିଲେ ଯେ ଶ୍ରୀଲଙ୍କାରେ 2,000ରୁ 4,000 ହାତୀ ଅଛନ୍ତି ।

ଭାରତରେ ପ୍ରାୟ 9,950ରୁ 15,080 ବଣୁଆ ହାତୀ ଅଛନ୍ତି । ଏମାନଙ୍କ ମଧ୍ୟରୁ ଉତ୍ତର-ପୂର୍ବ ଭାରତରେ 1,000ରୁ 8,000, ପଶ୍ଚିମଘାଟ ପର୍ବତମାଳାରେ 4,500, କେନ୍ଦ୍ରୀୟ ଭାଗରେ 900ରୁ 2,000 , ପଶ୍ଚିମ ହିମାଳୟର ସମତଳ ଅଞ୍ଚଳରେ 500 ଓ ଆଣ୍ଡାମାନ ଦ୍ୱୀପପୁଞ୍ଜରେ 30ଟି ହାତୀ ଅଛନ୍ତି ।

ଏସିଆର ଅନ୍ୟ ଭାଗ ମଧ୍ୟରୁ ମିଆଁମାରରେ ସର୍ବାଧିକ 5,000; ତା' ପରକୁ ଥାଇଲାଣ୍ଡରେ 2,500ରୁ 4,500; କାମ୍ପୁଚିଆ (ଏବେକାର କାମ୍ବୋଡିଆ), ଲାଓସ୍ ଓ ଭିଏତ୍‌ନାମରେ 3,500ରୁ 5,000; ମାଲେସିଆରେ 3,000ରୁ 6,000 ଓ କାଲିମାନ୍ତାନ (ଆଗର ବୋର୍ଣ୍ଣିଓ)ରେ ପ୍ରାୟ 2,000 ହାତୀ ଅଛନ୍ତି ।

ହାତୀଙ୍କ ସଂଖ୍ୟା କମାଇବା ପାଇଁ ତାଙ୍କୁ ଗୁଳି କରି ମରାଯିବା ସମୟରେ ଏହା ବିନା ଯୋଜନାରେ କରାଯିବା ଉଚିତ ନୁହେଁ । ଏହି ହତ୍ୟାକୁ ଯଥେଷ୍ଟ ଦକ୍ଷ ଓ ମାନୁଷିକତାର ସହ କରାଯିବା ଦରକାର । ଗୋଟିଏ ଶକ୍ତିଶାଳୀ ରାଇଫଲ୍ ଧରି ବି ଗୋଟିଏ ହାତୀକୁ ଶିକାର କରିବା ସହଜ କଥା ନୁହେଁ । ହାତୀର କେଉଁ ନିର୍ଦ୍ଦିଷ୍ଟ ଜାଗାକୁ ମାରିଲେ ହାତୀ ମରିପାରିବ ଶିକାରୀ ଏହା ଜାଣିବା ଅତ୍ୟନ୍ତ ଆବଶ୍ୟକ ଅଟେ ।

## ବ୍ୟବସାୟ କେନ୍ଦ୍ର

ଭାରତର ବିହାର ଓ ଦକ୍ଷିଣରେ କାଲିକଟ୍‌ଠାରେ ହାତୀ ବ୍ୟବସାୟର ପ୍ରମୁଖ କେନ୍ଦ୍ରମାନ

Digitized by srujanika@gmail.com

ରହିଛି । ଉତ୍ତର ବିହାରରେ ପ୍ରତିବର୍ଷ ଚାରିଟି ବିଖ୍ୟାତ ବଳଦମେଳା ହୋଇଥାଏ । ଆସାମ ଓ ପଶ୍ଚିମ ବଙ୍ଗରେ ଜଙ୍ଗଲରୁ ଧରାଯାଇଥିବା ହାତୀସବୁକୁ ଏଠାରେ ବିକିବା ପାଇଁ ଅଣାଯାଏ । ନଭେମ୍ବରରେ ଆୟୋଜିତ ହେଉଥିବା ସୋନ୍‌ପୁର ମେଳାରେ, ଏକଦା ବିକ୍ରି ପାଇଁ 600ରୁ 800 ହାତୀଙ୍କୁ ଅଣାଯାଇଥିଲା । ସୋନ୍‌ପୁର୍ ମେଳା ପଛକୁ ଆଉ ଗୁରୁତ୍ୱପୂର୍ଣ୍ଣ ହାତୀ ବିକ୍ରି ହେଉଥିବା ମେଳାଗୁଡ଼ିକର କ୍ରମ ହେଉଛି ଜାନୁଆରୀରେ କରାଯାଉଥିବା ଖାଗ୍ରା ମେଳା, ତା'ପରକୁ ମାର୍ଚ୍ଚରେ କରାଯାଉଥିବା ସିମେଶ୍ୱର ମେଳା ଓ ଏପ୍ରିଲ୍‌ରେ କରାଯାଉଥିବା ନାକ୍‌ମାର୍ଦ୍ଦ୍ ମେଳା । ଏଠାରେ ହଜାର ହଜାର ବର୍ଷ ଧରି ଏପରି ହାତୀଙ୍କର କିଣାବିକା ଚାଲିଛି । ବୋଧହୁଏ ଏହି କେନ୍ଦ୍ରଗୁଡ଼ିକରେ ନିଜ ସୈନ୍ୟବାହିନୀ ପାଇଁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ହାତୀ କିଣୁଥିଲେ ।

## ଶୁଭ ଓ ଅଶୁଭ ସଙ୍କେତ

ହାତୀର ପ୍ରତ୍ୟେକ ଆଗ ପାଦରେ ପାଞ୍ଚଟି ଲେଖାଏଁ ଓ ପ୍ରତ୍ୟେକ ପଛ ପାଦରେ ଚାରିଟି ଲେଖାଏଁ ଅଙ୍ଗୁଳି ଥାଏ । ସର୍ବମୋଟରେ ହାତୀର 18ଟି ଅଙ୍ଗୁଳି ଥାଏ । କୌଣସି ହାତୀର ଯଦି ଏହାଠାରୁ ଅଧିକ ବା କମ୍ ଅଙ୍ଗୁଳି ଥାଏ ତେବେ ଏହାକୁ ଅଶୁଭ ବୋଲି ଧରାଯାଇଥାଏ । ଯେଉଁ ହାତୀର ପାଦରେ 16ଟି ଅଙ୍ଗୁଳି ଥାଏ ତାକୁ ଏତେ ଅଶୁଭ ବୋଲି ଧରାଯାଏ ଯେ ଏହାକୁ କେହି ଜାଣନ୍ତି ନାହିଁ । ହାତୀଙ୍କୁ ବିକିବା ସମୟରେ, ଦିଆଯିବା ସମୟରେ ଓ ଏପରିକି ବିଦେଶକୁ ରପ୍ତାନୀ ସମୟରେ ବି ଏହି କଥାଟିକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଥାଏ ।

ସାଧାରଣତଃ ଗୋଟିଏ ହାତୀକୁ ଯେତେବେଳେ ପ୍ରଥମ ଥର ପାଇଁ ଏକ ଶିବିରକୁ ଅଣାଯାଏ, ତାକୁ ଘେରି ଯାଇଥିବା ଲୋକେ ଆଗ ଯାଞ୍ଚ କରି ନିଅନ୍ତି ତା'ର କେତୋଟି ଆଙ୍ଗୁଠି ଅଛି । ଏଥିରେ କୌଣସି ଅସୁବିଧା ଥିଲେ ହାତୀ ବିକାଳୀମାନେ ଗ୍ରାହକଙ୍କ ଆଗରେ ଏହି କଥାଟିକୁ ଯଥାସମ୍ଭବ ଗୋପନ ରଖିବା ପାଇଁ ଚେଷ୍ଟା କରିଥାନ୍ତି । ଗ୍ରାହକ ସବୁବେଳେ ଚାହାନ୍ତି ଯେ ହାତୀଟିକୁ ଖୋଲା ଜାଗାକୁ ଅଣାଯାଇ ସଠିକ ଭାବରେ ଏହାର ଅଙ୍ଗୁଳି ଗୁଡ଼ିକୁ ଯାଞ୍ଚ କରାଯାଉ । କେତେଜଣ ଚାଲାକ ଓ ବେଖାତିର ମାଲିକ ଗ୍ରାହକଙ୍କୁ ଧୋକା ଦେବା ପାଇଁ ହାତୀଙ୍କ ପାଦ ଉପରେ ଶାମୁକା ଲଗାଇ ଦେଇଥାଆନ୍ତି ।

ଆକବରଙ୍କ ସମୟରେ ଈଷତ୍ ନାଲି ରଙ୍ଗ ମିଶା ଫିକା ଧଳା ଆଖି ଥିବା ହାତୀଙ୍କୁ ଶୁଭଙ୍କର ବୋଲି ବିଶ୍ୱାସ କରାଯାଉଥିଲା । ଆଜିକାଲି ହାତୀ ପାଳକମାନେ ଏହି ଧରଣର ହାତୀଙ୍କୁ ବିପଦଜନକ ଓ ବିଶ୍ୱାସ ଅଯୋଗ୍ୟ ବୋଲି ଧରୁଛନ୍ତି । ବିପଦରେ ପଡ଼ିଲେ ଏହି ହାତୀଗୁଡ଼ିକ ଆତଙ୍କିତ ହୋଇଉଠନ୍ତି । ରେକର୍ଡ କହେ ଯେ ଏହି ଧରଣର ହାତୀଗୁଡ଼ିକ ବିପଦ ସମୟରେ ନିଜର ଏପରି ଅଘଟଣ କରି ବସନ୍ତି, ଯେଉଁଥିପାଇଁ ସେମାନଙ୍କୁ ଗୁଳି କରିବାକୁ ପଡ଼ିଥାଏ ।

କୌଣସି ହାତୀର ଜିଭ କଳା ଥିଲେ ବା ଏହା ଉପରେ କଳା ଦାଗ ଥିଲେ ହାତୀଟିକୁ

Digitized by srujanika@gmail.com

ଅଶୁଭ ବୋଲି ଧରାଯାଏ । ତାଳୁରେ କଳା ଦାଗ ଥିଲେ ବି ଏହାକୁ ଅଶୁଭ ବୋଲି ବିଚାର କରାଯାଏ । ଏପରି ହାତୀକୁ ବିକିବାକୁ ନେବା ଆଗରୁ ତାର ଏହି କଳା ଦାଗର ଚିକିତ୍ସା କରାଯାଇଥାଏ । ଏହାକୁ ଏକ ପଡ଼ିଆରେ ପକାଇ ଦିଆଯାଇ ତାକୁ ଦଉଡ଼ିରେ କଷି କରି ବାନ୍ଧି ଦିଆଯାଏ ଯେପରି ସେ ହଲ୍‌ଚଲ୍ ହୋଇପାରିବ ନାହିଁ । ତା ପରେ ତା' ମୁହଁକୁ ଖୋଲି କଳାଦାଗ ଉପରେ ତୁତିଆ (କପର୍ ସଲ୍‌ଫେଟ୍) ଘଷାଯାଏ; ଏହାଦ୍ୱାରା ଜାଗାଟିରେ ଘା' ହୋଇଯାଏ । ଏହି ଘା'ଟି ଶୁଖିବା ପାଇଁ କିଛିଦିନ ଯାଏଁ ଏହା ଉପରେ ଘିଅ ଲଗାଯାଏ । ଏହା କେବଳ ବଡ଼ ହାତୀ ଛୁଆଙ୍କ କ୍ଷେତ୍ରରେ କାମ କରିଥାଏ । କିନ୍ତୁ ଏହାର ପ୍ରଭାବ ସାମୟିକ ହୋଇଥାଏ । ପୁଣି କିଛିଦିନ ପରେ ହାତୀ ପାଟିରେ ଏହି କଳାଦାଗ ଦେଖା ଦେଇଥାଏ ।

କେତେକ ହାତୀଙ୍କର ଛେଳିଙ୍କ ପରି ବେକତଳେ ପହ୍ଲାପରି ଦୁଇଟି ଅଙ୍ଗ ବଢ଼ିଥାଏ । ଏହାକୁ ବି ଏକ ଅଶୁଭ ସଙ୍କେତ ବୋଲି ବିଚାର କରାଯାଇଥାଏ । ସଳଖ ବେକ ଥିବା ଗୋଟିଏ ହାତୀକୁ ବେକ ନଇଁ ପଡ଼ିଥିବା ଏକ ହାତୀ ଅପେକ୍ଷା ଉନ୍ନତ ମାନର ବୋଲି ଧରାଯାଇଥାଏ । ବେକ ନଇଁ ଯାଇଥିଲେ ହାତୀଟି ମୁଣ୍ଡ ଟେକି ବେଶି ଦୂର ଯାଏଁ ଦେଖି ପାରି ନଥାଏ । ଦାନ୍ତ କ୍ଷେତ୍ରରେ ମଧ୍ୟ ଏହି ହିସାବଟି କାମ କରିଥାଏ, ଦାନ୍ତ ତଳକୁ ମୁହାଁଇଥିଲେ ହାତୀକୁ ଭଲ ବୋଲି ଧରାଯାଇ ନ ଥାଏ । ହାତୀର ଦାନ୍ତ ଉପରମୁହାଁ ହୋଇଥିଲେ ସେ ଶତ୍ରୁକୁ ଆକ୍ରମଣ କରିବାର ସୁବିଧା ପାଇଥାଏ ।

ହରିଣ ପରି ଆଖି, ସୁଗଠିତ କପାଳ ଓ ବଡ଼ ବଡ଼ କାନ ଥିବା ହାତୀକୁ ଭଲ ବୋଲି ବିଚାର କରାଯାଇଥାଏ, ଗୋଟିଏ ହାତୀର କାନ ଅତି ଛୋଟ ହେବା ଠିକ୍ ନୁହେଁ । ହାତୀର କପାଳ ବଡ଼ ଥାଇ ଏହାର ମୁଣ୍ଡରେ ବାଳ ଥିଲେ ଏହା ଏକ ଭଲ ସଙ୍କେତ ।

ହାତୀର ଉପର ଚମ ମୋଟା, ଶ୍ଳଥ (କୁଞ୍ଚମୟ) ଓ ଢିଲା ଥିଲେ ଏହାକୁ ହାତରେ ଧରିବାକୁ ସୁବିଧା ହୁଏ । ପୂରା ଚନ୍ଦାମୁଣ୍ଡିଆ ହାତୀ ବି ଯଥେଷ୍ଟ ଆଦର ପାଇଥାଏ । ଏହି ହାତୀଙ୍କର ଦେହସାରା କଳା ଧଳା ଦାଗ ସବୁ ରହିଥାଏ ।

ଲାଞ୍ଜଟି ଲମ୍ବା ଓ ନରମ ହେବା ଭଲ ଏବଂ ଏଥିରେ 27ଟି ଗଣ୍ଠି ରହିବା ଉଚିତ । ଏହାର ମୂଳଟି ମୋଟା ହୋଇ ଅଗ ଆଡ଼କୁ ପତଳା ହୋଇଥିବ ଓ ବଙ୍କା ହୋଇଥିବ । ଏହା ପଛଗୋଡ଼ର ଆଣ୍ଠୁ ଯାଏଁ ଲମ୍ବିଥିବା ଦରକାର । କେବଳ ଶୋଇଥିବା ସମୟକୁ ଛାଡ଼ିଦେଲେ ବାକି ସମୟରେ ହାତୀଟି ତା' ଲାଞ୍ଜଟିକୁ ହଲାଉଥିବା ଦରକାର ।

ପତଳା ଲାଞ୍ଜ ଥିବା ହାତୀ ଭଲ ଦାମରେ ବିକ୍ରି ହୋଇ ନ ଥାଏ । ଲାଞ୍ଜ ଅତି ଲମ୍ବା ଥାଇ ତଳେ ଘୋଷାରି ହେଉଥିଲେ ଏହାକୁ ସବୁଠୁ ଅଶୁଭ ବୋଲି ଧରାଯାଇଥାଏ । ଏପରି ଗୁଣ ଥିବା ଗୋଟିଏ ହାତୀ ସାଂଘାତିକ ହତ୍ୟାକାରୀ ହୋଇଥିବା କଥା ଷ୍ଟ୍ରେସି ଉଲ୍ଲେଖ କରିଛନ୍ତି ।

ଯେଉଁ ହାତୀକୁ ଧରାଯିବା ସମୟରେ ସେ ଯଥେଷ୍ଟ ବେଶି ବାଧା ଦେଇଥାଏ, ପର ସମୟରେ ସେ ଅତ୍ୟନ୍ତ ବଶ୍ୟ ହୋଇଥାଏ । ସେ ଶୀଘ୍ର ତାଲିମ ବି ନେଇପାରିଥାଏ ।

Digitized by srujanika@gmail.com

## ହାତୀଙ୍କ ଦାମ

ଭଲ ତାଲିମ ପାଇଥିବା ହାତୀଟିଏ ଯଥେଷ୍ଟ ଉଚ୍ଚ ଦାମରେ ବିକ୍ରି ହୋଇଥାଏ । ହାତୀ ବିକା କିଣା ସମୟରେ ତା'ର ବୟସଟିକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଥାଏ, ଚାଳିଶ ବର୍ଷ ଟପିଲା ପରେ ହାତୀର ମୂଲ୍ୟ ବି କମିବାରେ ଲାଗେ । କର୍ଣ୍ଣାଟକରେ ଗୋଟିଏ ଭଲ ତାଲିମ ନେଇଥିବା ଦନ୍ତା ହାତୀ 6,00,000 ଟଙ୍କା ଓ ଏକ ତାଲିମ ପାଇ ନଥିବା ମାଈ ହାତୀ 4,00,000 ଟଙ୍କାରେ ବିକ୍ରି ହୋଇଥାଏ ।

## ହାତୀ ଦାନ୍ତରେ କାରୁକାର୍ଯ୍ୟ

ହରପ୍ପା ଓ ମହେଞ୍ଜୋଦାରୋରୁ ମିଳିଥିବା ହାତୀଦାନ୍ତର କାରୁକାର୍ଯ୍ୟରୁ ଜଣାପଡୁଛି ଭାରତରେ 5,000 ବର୍ଷ ତଳେ ହାତୀ ଦାନ୍ତରେ କାରୁକାର୍ଯ୍ୟ ଯଥେଷ୍ଟ ଉନ୍ନତି କରିଥିଲା । ସେ ସମୟରେ ବିଭିନ୍ନ ଆକାରର ବିବିଧ ଘରକରଣା ଉପକରଣ ଓ ଅଳଙ୍କାର ସବୁ ହାତୀଦାନ୍ତରେ ତିଆରି ହୋଇଥିଲା । ସେ ସମୟରେ କାରୁକାର୍ଯ୍ୟରେ ଖଚିତ ଅନେକ ହାତୀଦାନ୍ତ ଖେଳଣା ବି ଏବେ ମିଳୁଛି ।

ମାଟି ତଳୁ ଅନେକ ଆକାରର ହାତୀଦାନ୍ତ ଅଳଙ୍କାର ଓ ଉପକରଣମାନ ମିଳୁଛି । ଏଥିରେ ବିଭିନ୍ନ ରଙ୍ଗର ଗାର ଓ ଚିତ୍ରମାନ ବି ରହିଛି । ଏସବୁ ଅଳଙ୍କାର କବଚ, କୁଣ୍ଡଳ ଓ ଖେଳର ଉପକରଣ ରୂପେ ବ୍ୟବହୃତ ହେଉଥିଲା । ଏହି ଗାର ଓ ଗୋଲାକାର ଅଙ୍କନ ଗୁଡ଼ିକର ଯାଦୁକରୀ ସୌନ୍ଦର୍ଯ୍ୟ ରହିଛି ।

ହିନ୍ଦୁ ବିବାହ କାର୍ଯ୍ୟ ସମୟରେ ହାତୀ ଦାନ୍ତର ଖଡ଼ୁ ପିନ୍ଧିବାକୁ ଶୁଭ ବୋଲି ଧରାଯାଇଥାଏ ।

ପ୍ରାଚୀନ କାଳରେ ହାତୀ ଦାନ୍ତରେ କାରୁକାର୍ଯ୍ୟ କରୁଥିବା ଶିଳ୍ପୀମାନଙ୍କୁ ରାଜସିଂହାସନ, ପଲଙ୍କ ଓ ରାଜ ଉଆସର ଅନ୍ୟାନ୍ୟ ଉପକରଣରେ ହାତୀ ଦାନ୍ତର ବିଭିନ୍ନ ଡିଜାଇନ୍ ଲଗାଇବା ପାଇଁ ରାଜଉଆସରେ ଚାକିରି ଦିଆଯାଉଥିଲା । ରାଜା ହର୍ଷବର୍ଦ୍ଧନଙ୍କ ଦରବାର ବିଷୟରେ ବାଣଭଟ୍ଟ (630 ଖ୍ରୀ.ପୂ) ଲେଖିଛନ୍ତି ଯେ ରାଜାଙ୍କର ବିଭିନ୍ନ ସୌଖୀନ ଉପକରଣ ସବୁ ହାତୀଦାନ୍ତରେ ତିଆରି ହୋଇଥିଲା । ଅଯୋଧ୍ୟାର ରାଣୀ କୈକେୟୀଙ୍କର ସିଂହାସନ ହାତୀ ଦାନ୍ତରେ ତିଆରି ହୋଇଥିଲା । ରାବଣର ଅଟ୍ଟାଳିକାର ସ୍ତମ୍ଭ ଗୁଡ଼ିକ ହାତୀ ଦାନ୍ତରେ ତିଆରି କରାଯାଇଥିଲା ଓ ତା'ର ରଥରେ ହାତୀଦାନ୍ତର ଅନେକ କାରୁକାର୍ଯ୍ୟ କରି ଲଗାଯାଇଥିଲା ।

ଆଫ୍ରିକାରେ ମଧ୍ୟ ହାତୀ ଦାନ୍ତ କାରୁକାର୍ଯ୍ୟର ଯଥେଷ୍ଟ ମୂଲ୍ୟ ରହିଛି । ନାଇଜେରିଆରେ ଆଦିବାସୀ ସର୍ଦ୍ଦାରଙ୍କର ଘରକୁ ପହରା ଦେଉଥିବା ଜଗୁଆଳମାନେ ହାତରେ ବିରାଟକାୟ ହାତୀଦାନ୍ତ ଧରିଥାଆନ୍ତି ।

ଅତି ପ୍ରାଚୀନ କାଳରୁ ଭାରତର ବିଭିନ୍ନ ଜାଗାରେ ହାତୀ ଦାନ୍ତର ବିଭିନ୍ନ କାରୁକାର୍ଯ୍ୟର ପ୍ରଚଳନ ହୋଇ ଆସୁଅଛି । କାଠ ଅପେକ୍ଷା ହାତୀ ଦାନ୍ତରେ ଖୋଦେଇ କାମ ଉନ୍ନତ ମାନର

Digitized by srujanika@gmail.com

ହୋଇଥାଏ । ଦିଲ୍ଲୀ, ମୁର୍ଶିଦାବାଦ, ମହୀଶୂର (ଏବେର କର୍ଣ୍ଣାଟକ) ଓ ତ୍ରାଭାଙ୍କୋର (ଏବେ କେରଳ ରାଜ୍ୟର ଏକ ଅଂଶ)ର ହାତୀଦାନ୍ତ କାମ ପୃଥିବୀରେ ବିଖ୍ୟାତ ଅଟେ । ଓଡ଼ିଶାରେ ବି ହାତୀଦାନ୍ତ କାମ କରାଯାଇଥାଏ । ହୋଶିଆର୍‌ପୁର ଓ ମୋଙ୍ଗିର୍‌ରେ ଉନ୍ନତ ମାନର ହାତୀଦାନ୍ତ କାରୁକାର୍ଯ୍ୟ କରାଯାଇଥାଏ । 1968 ମସିହାରେ ସାଧାରଣତନ୍ତ୍ର ଦିବସ ଅବସରରେ ଦୁଇଜଣ ହାତୀଦାନ୍ତ ଶିଳ୍ପୀଙ୍କୁ ସମ୍ମାନିତ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ଜଣେ ଥିଲେ କେରଳରୁ ଓ ଆଉ ଜଣକ ପଶ୍ଚିମ ବଙ୍ଗର ଶିଳ୍ପୀ ଥିଲେ । ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି ତିଆରି କରିବା ଓ ବୋତାମ, ପାନିଆ, ଗହଣା ପେଡ଼ି, ସିଗାରେଟ୍ ଖୋଳ, ଚେସ୍ ଖେଳର ଗୋଟି ଓ ଚୁଡ଼ି ଆଦି ତିଆରି ପାଇଁ ହାତୀଦାନ୍ତ ଏକ ଉତ୍କୃଷ୍ଟ କଞ୍ଚାମାଲର କାମ କରିଥାଏ ।

ରାଜଧାନୀରେ ଅନେକ ଶିଳ୍ପୀ ନିଜ ପେଟ ପୋଷିବା ପାଇଁ ଏହି କାମ ଉପରେ ନିର୍ଭର କରିଥାନ୍ତି । ବିଦେଶର ବିଭିନ୍ନ ଅତିଥିଙ୍କୁ ସେମାନଙ୍କ ଦ୍ୱାରା ତିଆରି ହାତୀଦାନ୍ତର ଉପକରଣ ଉପହାର ଦିଆଯାଇଥାଏ । ଜାକ୍‌ଲିନ୍ କେନେଡିଙ୍କ ଭାରତ ଗସ୍ତ କାଳରେ ତାଙ୍କୁ ହାତୀ ଦାନ୍ତର ଗୋଟିଏ ସୁଅଳଙ୍କୃତ ଟେବୁଲ୍ ଲ୍ୟାମ୍ପ ଦିଆଯାଇଥିଲା । ଭାରତର ରାଷ୍ଟ୍ରପତି ପଦବୀରୁ ଅବସର ନେଲାପରେ ଡ. ରାଜେନ୍ଦ୍ର ପ୍ରସାଦଙ୍କୁ ଦିଲ୍ଲୀର ସାମ୍ବାଦିକମାନେ ହାତୀ ଦାନ୍ତରେ ତିଆରି ବୁଦ୍ଧଙ୍କର ମୂର୍ତ୍ତିଟିଏ ଉପହାର ଦେଇଥିଲେ ।

ବୋଷ୍ଟନ୍‌ଠାରେ ଅନୁଷ୍ଠିତ ଏକ ମେଳାରେ ଭାରତୀୟ ମଣ୍ଡପରେ ହାତୀ ଦାନ୍ତର କାରୁକାର୍ଯ୍ୟ ଦେଖିବା ପାଇଁ ବିଶେଷ ଭିଡ଼ ଜମିଥିଲା । ସେଠାରେ ସୁନ୍ଦର ଭାବେ ଅଳଙ୍କୃତ ଓ ସଜ୍ଜିତ ହାତୀ ଦାନ୍ତର ସୂକ୍ଷ୍ମ କାରୁକାର୍ଯ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେଠାରେ ହାତୀ ଦାନ୍ତର ତାରରେ ଗୋଟିଏ fly whisk ଥିଲା । ଗୋଟିଏ ଯାଦୁବଲ୍ ଭିତରେ ବଲ୍ ଭିତରେ ବଲ୍ ହେଇ ସମୁଦାୟ 24ଟି ବଲ୍ ରହିଥିଲା ।

## ହାତୀ ଦାନ୍ତର ରାସାୟନିକ ଗଠନ

ହାତୀ ଦାନ୍ତ ମୂଳତଃ ଡେଣ୍ଟାଇନ୍‌ରେ ଗଢ଼ା ହୋଇଥାଏ । ଏହାର ଏକ ପ୍ରଧାନ ଅଂଶ – ଶତକଡ଼ା ପ୍ରାୟ 57 ରୁ 60 ଭାଗ – କାଲ୍‌ସିୟମ୍‌ର ଲବଣରେ ତିଆରି ହୋଇଥାଏ । ଏହି ଲବଣର ମୂଳ ଭାଗଟି ଫସ୍‌ଫେଟ୍ ଅଟେ । ଏଥିରେ ଶତକଡ଼ା 40 ରୁ 43 ଭାଗ ଜୈବ ମିଶ୍ରଣ (ଅର୍ଗାନିକ୍ ମାଟ୍ରିକ୍‌ସ୍) ଓ 0.24 ରୁ 0.34 ଶତାଂଶ ଚର୍ବି ଥାଏ । ଅନ୍ୟ ଡେଣ୍ଟାଇନ୍ ଜିନିଷଠାରୁ ଏଥିରେ ଫରକ ହେଉଛି ଏଥିରେ ଯଥେଷ୍ଟ ଅଧିକ ପରିମାଣରେ ଜୈବ ମିଶ୍ରଣ ରହିଥାଏ । ଏହାର ଗଠନ ବି କିଛି ପରିମାଣରେ ଅଲଗା ଥାଏ । ହାଡ଼ ଅପେକ୍ଷା ଏହା ଅଧିକା ଚାପ ସହିପାରେ ।

ଶୁଖିଗଲେ ହାତୀଦାନ୍ତ ଅଳ୍ପ ପରିମାଣରେ ସଙ୍କୁଚିତ ହୋଇଯାଏ । ତେଣୁ କୌଣସି ହାତୀଦାନ୍ତ ଉପକରଣ ତିଆରି କରାଯିବା ପୂର୍ବରୁ ଏହାକୁ ପ୍ରଥମେ ବଡ଼ ବଡ଼ ଖଣ୍ଡ କରି କାଟି ଶୁଖିବାକୁ ଛାଡ଼ିଦିଆଯାଏ । ତା' ପରେ ଏହାକୁ ଅନ୍ତିମ ଆକୃତି ଓ ରୂପ ଦିଆଯାଏ ।

Digitized by srujanika@gmail.com

ଏଥିରେ ଫସ୍‌ଫୋରିକ ଏସିଡ୍ ଦେଇ ଏହାକୁ ନମନୀୟ କରିଦିଆଯାଏ । ଏହାପରେ ଏହାକୁ ପାଣିରେ ଧୋଇ ଶୁଖାଇ ଦେଲା ପରେ ଏହା ତାର ପୂର୍ବର କଠିନ ଅବସ୍ଥାକୁ ଫେରିଆସେ । ଏହି ପ୍ରକ୍ରିୟାରେ ହାତୀ ଦାନ୍ତର ଗୁଣଧର୍ମ କିଛି ପରିମାଣରେ ବଦଳିଯାଏ । ଏଥର ଏହା ଉପରେ ଆବଶ୍ୟକୀୟ ରଙ୍ଗ ଦିଆଯାଇପାରିଥାଏ । ଏହା ଖରାରେ ଶୁଖାଇ ବା ପ୍ରଥମେ ହାଇଡ୍ରୋଜେନ୍ ପେରକ୍ସାଇଡ୍ ଓ ତା ପରେ ପୋଟାସିଅମ୍ ପର୍‌ମାଙ୍ଗାନେଟ୍‌ରେ ଧୋଇ ଏହାର ରଙ୍ଗକୁ ବି ଛଡ଼ାଇ ଦିଆଯାଇପାରେ ।

ହାତୀ ଦାନ୍ତର ଛେଲି ଓ ଗୁଣ୍ଡକୁ ନେଇ ହାଡ଼ ଜିଲେଟିନ୍ ଓ ହାତୀ ଦାନ୍ତ କଳା ବନାଯାଇଥାଏ । ଉପଯୁକ୍ତ ରାସାୟନିକ ପ୍ରତିକ୍ରିୟା ପରେ ଏହାକୁ ଏକ ଛାଞ୍ଚରେ କଠିନ କରି ପକାଇଦିଆଯାଏ । ଏହାକୁ ପାଣି ଭିତରେ ଅଟୋକ୍ଲେଭ୍‌ରେ ଘନ ସେ.ମି. ପିଛା 2ରୁ 3 କି.ଗ୍ରା. ଚାପ ଦେଇ ରଖାଯାଏ । ଏହାକୁ ଧୋଇ, ଶୁଖାଇ ଏହାର ରଙ୍ଗ ଉଡ଼ାଇବା (ବିରଞ୍ଜନ କରିବା) ପରେ ଏହାକୁ କୃତ୍ରିମ ରେସିନ୍ ଦେହରେ ମିଶାଯାଇପାରେ । ହାତୀ ଦାନ୍ତ ଗୁଣ୍ଡକୁ ଘରୁଆ ଉତ୍ତାପରେ ବିଭିନ୍ନ ଛାଞ୍ଚରେ ପକାଇ ନାନା ରକମର ଉପକରଣ ବନାଯାଇପାରିଥାଏ ।

ପ୍ରାକୃତିକ (ଶୁଦ୍ଧ) ହାତୀଦାନ୍ତକୁ କୃତ୍ରିମ ହାତୀଦାନ୍ତ ଠାରୁ ଚିହ୍ନିବା ପାଇଁ ଏହାକୁ ଛଣାଯାଇଥିବା (ଫିଲ୍‌ଟର୍‌ଡ୍) ଅତି ବାଇଗଣୀ ରଶ୍ମି (ଅଲ୍‌ଟ୍ରା ଭାଓଲେଟ୍ ଲାଇଟ୍) ତଳେ ରଖାଯାଏ । ଶୁଦ୍ଧ ହାତୀଦାନ୍ତରୁ ଏହି ସମୟରେ ନୀଳ ରଙ୍ଗର ଫ୍ଲୋରେସେନ୍‌ସ୍ (ଆଲୁଅ) ବାହାରିଥାଏ; କିନ୍ତୁ କୃତ୍ରିମ ହାତୀ ଦାନ୍ତରୁ ଏହା ଦେଖିବାକୁ ମିଳି ନ ଥାଏ ।

## ହାତୀ ଦେହର ଉପଯୋଗିତା

ଶିବ, ତାଙ୍କର ତୁଷାର ଅଭୟାରଣ୍ୟରେ, ଗୋଟିଏ ହାତୀ ଚମଡ଼ାର ସୁରକ୍ଷିତ ଖୋଳ ଭିତରେ ଶୟନ କରିଥାନ୍ତି ବୋଲି ଲେଖାଅଛି ।

ହାତୀ ଚମଡ଼ାରେ ସୁଟ୍‌କେଶ୍, ଛତା ଷ୍ଟାଣ୍ଡ୍, ଷ୍ଟୁଲ୍ ଖୋଳ ଓ ବିବିଧ ଉପକରଣ ବନାଯାଇଥାଏ ।

ହାତୀ ଲାଞ୍ଜର ବାଳରେ ଚୁଡ଼ି, ହାର, ଚଡ଼ୁ ଆଦି ବନାଯାଇଥାଏ । କେରଳରେ ହାତୀ ଦାନ୍ତର ଅଳଙ୍କାର ପିନ୍ଧିବାକୁ ଶୁଭ ବୋଲି ଧରାଯାଇଥାଏ ।

ହାତୀର ବିରାଟକାୟ ମୋଟା ନଖଗୁଡ଼ିକରେ ଛୁରୀ ବେଣ୍ଟ, ବୋତାମ, ଚାମଚ ଓ ପ୍ଲେଟ୍ ଆଦି ବନାଯାଇଥାଏ । ଏଗୁଡ଼ିକର ବ୍ୟବସାୟିକ ବ୍ୟବହାର ସୀମିତ । ତେଣୁ ଆର୍ଥିକ ଦିଗରୁ ଏହା ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

## ହାତୀ ମାଂସ

ଆଟ୍‌ଲାଣ୍ଟା ସିଟିରେ 1964 ମସିହା ଜୁଲାଇ ମାସରେ ଡେମୋକ୍ରାଟିକ୍ ପାର୍ଟି (ଗଣତାନ୍ତ୍ରିକ ଦଳ)ର ସମ୍ମିଳନୀ ବସିଥିଲା । ଏଠାରେ ଡେମୋକ୍ରାଟିକ୍ ପାର୍ଟିର ଏକ ସଙ୍କେତ ରୂପେ ଆମନ୍ତ୍ରିତ ପ୍ରତିନିଧିମାନଙ୍କୁ ହାତୀ ମାଂସ ଦେବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । କିନ୍ତୁ ଅଧିକାଂଶ

Digitized by srujanika@gmail.com

ଦେଶରେ ହାତୀକୁ ବଧ କରିବା ନିଷେଧ ହୋଇଥିବାରୁ ଏଥିରେ ଏକ ସମସ୍ୟା ସୃଷ୍ଟି ହେଲା । ତା ପରେ ଗୋଟିଏ ଉପାୟ ବାହାର କରାଗଲା । କୌଣସି ମାରଣା ହାତୀକୁ ଗୁଳି କରିବା ପାଇଁ ଜଙ୍ଗଲ ବିଭାଗ ଅନୁମତି ଦେଇଥାଏ । ଏହି ନିୟମକୁ ଆଧାର କରି ଦକ୍ଷିଣ ପଶ୍ଚିମ ଆଫ୍ରିକାରେ ଓ୍ୱିଣ୍ଡହ୍କ ଠାରୁ 647 କି.ମି. ଦୂରରେ ଥିବା ଇତୋଶା ସଂରକ୍ଷିତ ଜଙ୍ଗଲରେ ଗୋଟିଏ ମାରଣା ହାତୀକୁ ଠାବ କରାଗଲା ଓ ଏହାକୁ ଗୁଳି କରିବା ପାଇଁ ଜଙ୍ଗଲ ବିଭାଗର ଅନୁମତି ନିଆଗଲା । ହାତୀଟିକୁ ମରାଗଲା । କିନ୍ତୁ ତଥାପି ସମ୍ମିଳନୀର ପ୍ରତିନିଧିମାନଙ୍କୁ ହତାଶ ହେବାକୁ ପଡ଼ିଲା, କାରଣ ଯୁକ୍ତରାଷ୍ଟ୍ର ଆମେରିକାର କୃଷି ବିଭାଗ ଆମେରିକାକୁ ହାତୀ ମାଂସ ଆମଦାନୀ କରିବା ଉପରେ ଏକ କଟକଣା ଜାରି କରିଥିଲା ।

ଚରକଙ୍କ ମତ ଅନୁସାରେ କ୍ଷୟକାଶ ରୋଗୀଙ୍କ ପାଇଁ ହାତୀ ମାଂସ ଭଲ କାମ ଦେଇଥାଏ । ଏହାକୁ ନିୟମିତ ଖାଇଲେ ରୋଗୀ ଦେହରେ ମାଉଁସ ଲାଗେ । ମିଆଁମାରରେ ହାତୀ ମାଂସକୁ ବହୁଳ ଭାବରେ ଖିଆଯାଏ । ନାଗାଙ୍କ ଇଲାକାରେ ଅନେକ ହାତୀ ଥିଲେ ବି ନାଗାମାନେ ହାତୀକୁ ପୋଷା ମନେଇବା ଜାଣିନାହାନ୍ତି । ନାଗାମାନେ ଅନୁଭବ କରନ୍ତି ଯେ ହାତୀ ତାଙ୍କର ଫସଲକୁ ଯଥେଷ୍ଟ ନଷ୍ଟ କରି ଦେଇଥାଏ ସତ, କିନ୍ତୁ ଏହାର ମାଂସକୁ ଖାଇହୁଏ । ତେଣୁ ସେମାନେ ହାତୀ ଶିକାର କରିବାକୁ ପସନ୍ଦ କରିଥାନ୍ତି । ସେମାନେ ଶିକାରର ମଜା ପାଇବା ସାଙ୍ଗକୁ ତାଙ୍କୁ ଭୋଜି କରିବା ପାଇଁ ଯଥେଷ୍ଟ ମାଂସ ବି ମିଳିଯାଇଥାଏ ।

ମଧ୍ୟ ଆଫ୍ରିକାର ଚାରି ନଦୀର ନାଉରିଆମାନେ ଗୋଟିଏ ଗୀତ ଗାଇଥାନ୍ତି । ଏଥିରେ କୁହାଯାଇଛି :

*ଦନ୍ତା ହାତୀ ଆମେ ମାରିବା, ଦନ୍ତା ହାତୀ ଆମେ ଖାଇବା,*
*ତା' ଭିତରେ ପଶିବା, ତା' ହୃତ୍‌ପିଣ୍ଡ, କଲିଜା ଖାଇବା ।*

1964 ମସିହାରେ ଡେସ୍‌ମଣ୍ଡ ଓ୍ୱାରାଡ଼େ ଯେତେବେଳେ ଗୋଟିଏ ଏକଦାନ୍ତିଆ ହାତୀ ଶିକାର କଲେ ସେହି ଗାଁର ଲୋକମାନେ ସେହି ଘଟଣାଟିକୁ ରାତିସାରା ନାଚି ଓ ସେହି ମାଂସରେ ଭୋଜି କରି ଉପଭୋଗ କରିଥିଲେ । ଆଫ୍ରିକାର ଆଦିବାସୀଙ୍କ ପାଇଁ ହାତୀ ମାଂସରେ ଭୋଜି କରିବା ଏକ ବିରଳ ଅବସର ହୋଇଥାଏ ।

## ଔଷଧୀୟ ଉପଯୋଗିତା

ଚରକ ହାତୀକୁ ସବୁଠୁ ରାଜକୀୟ ଓ ଓଜସ୍ୱୀ ପଶୁ ରୂପେ ବର୍ଣ୍ଣନା କରିଛନ୍ତି ।[1] ଜଣେ ଓଜସ୍ୱୀ ପୁରୁଷକୁ ହାତୀ ସହିତ ତୁଳନା କରାଯାଇଥାଏ ।[2] ଘିଅ, ମହୁ, ଗୁଡ଼ ଓ ଅଟାକୁ ମିଶାଇ ଏକ ମୋଦକ ବନାଯିବା ପାଇଁ ଚରକ ଏକ ଉପାୟ ବାହାର କରିଥିଲେ । ଏହି ମୋଦକକୁ ଖାଇଲେ ଜଣେ ମଣିଷ ହାତୀ ପରି ଓଜସ୍ୱୀ ହୋଇଇପାରିବ ।[3] ଚରକଙ୍କର ଏକ ମହୌଷଧିକୁ ଜଣେ

[1] ଚରକ, *ଭାଜିକରଣ*, 11, 2 (29).
[2] ତତ୍ରୈବ, 11, 4 (6).
[3] ତତ୍ରୈବ, 11, 4 (35).
[4] ଚରକ, *ସିଦ୍ଧି ସ୍ଥାନ*, XII, 19 (1).

Digitized by srujanika@gmail.com

ରୋଗୀକୁ ଦିଆଯିବା ଆଗରୁ ଏହାକୁ ପ୍ରଥମେ ହାତୀର ପିଠି ଉପରେ ରଖାଯାଉଥିଲା । ଏହାଦ୍ୱାରା ଏହା ଅଧିକ ଶକ୍ତିଶାଳୀ ହୋଇ କାମ କରିପାରିବ ବୋଲି ବିଶ୍ୱାସ କରାଯାଉଥିଲା ।[4] ଆଣ୍ଡାମାନ୍‌ରେ ହାତୀଙ୍କର ମସ୍ତ ରସକୁ ନେଇ ଜନନେନ୍ଦ୍ରିୟକୁ ମାଲିସ୍ କରିବା ପାଇଁ ବ୍ୟବହାର କରାଯାଇଥାଏ । ମହିଳାମାନଙ୍କ ବନ୍ଧ୍ୟାକରଣ ପାଇଁ କୁଚିମାର୍ ତନ୍ତ୍ରରେ କୁହାଯାଇଛି ଯେ ସେମାନଙ୍କୁ ହାତୀ ମଳରେ ଥିବା ପାଣି ସହିତ ମହୁ ମିଶାଇ ସାତଦିନ ଯାଏଁ ପିଇବାକୁ ଦିଆଯିବ ।

ଗୋଟିଏ ସମୟରେ ବିଷ ପ୍ରୟୋଗ କରିବା ପାଇଁ ହାତୀର ପଛ ପାଖରେ ବିଷ ବୋଳି ଦିଆଯାଉଥିଲା ଓ ଲୋକଟିକୁ ହାତୀ ଉପରକୁ ଉଠିବା ପାଇଁ କୁହାଯାଉଥିଲା ।[5] ବିଷକୁ କାଟିବା ପାଇଁ ଚରକ ହାତୀ ମୁକ୍ତା ପିନ୍ଧିବା ପାଇଁ କହିଛନ୍ତି ।[6]

ରକ୍ତ ବାହାରୁଥିବା ମଳକଣ୍ଟକର ଚିକିତ୍ସା ପାଇଁ ଚରକ ହାତୀ ହାଡ଼ ଓ ନିମରେ ତିଆରି ଏକ ମଲମ ଲଗାଇବା ପାଇଁ କହିଛନ୍ତି ।[7]

ବାଳ ବଢ଼ିବା ପାଇଁ ବନାଯାଉଥିବା ଔଷଧରେ ହାତୀ ଦାନ୍ତ ଏକ ମୁଖ୍ୟ ସାମଗ୍ରୀ ହୋଇଥାଏ । ଶୁଶ୍ରୁତ କହିଛନ୍ତି ଯେ, ହାତୀ ଦାନ୍ତକୁ ପୋଡ଼ି, ଏହାକୁ ଚୂର୍ଣ୍ଣ କରି, ଛେଳି ଦୁଧ ସହିତ ମିଶାଇ ପ୍ରୟୋଗ କରାଗଲେ ଏପରିକି ଜଣଙ୍କର ପାପୁଲିରେ ବି ବାଳ ଉଠିପାରିବ ।[8]

ଘାସ ଖାଇବା ଆରମ୍ଭ କରି ନ ଥିବା ଗୋଟିଏ ହାତୀ ଛୁଆର ଗୋବର ଔଷଧ ରୂପେ ବ୍ୟବହୃତ ହୋଇଥାଏ । କେରଳରେ ଏହାକୁ କାରିଭେନ୍ନା ବୋଲି କୁହାଯାଇଥାଏ । ଉତ୍ତର ଭାରତରେ ବୈଦ୍ୟମାନେ ଏହାକୁ କାକୁଷ୍ଠ ବୋଲି କହିଥାନ୍ତି । ଏହାକୁ ପେଟମରା, ବାୟୁଦୋଷ ମଳଦ୍ୱାରର ରୋଗ ଓ ଏ ରକମର ଅନ୍ୟାନ୍ୟ ଦୋଷ ପାଇଁ ବ୍ୟବହାର କରାଯାଇଥାଏ ।[9]

ପ୍ରାଚୀନ ସଂସ୍କୃତ ଗ୍ରନ୍ଥଗୁଡ଼ିକରେ ଲେଖାଅଛି ଯେ ସେତେବେଳେ ହାତୀଙ୍କ ମସ୍ତ ରସ ବଜାରରେ ବିକ୍ରି ହେଉଥିଲା । ଏହା ଏକ ପଣ୍ୟ ସାମଗ୍ରୀ ରୂପେ ଗଣାଯାଉଥିଲା । ଜଣେ ଚିକିତ୍ସକ ଏହାକୁ ବାଳ ବଢ଼ିବା, ପିତ୍ତ ଦୋଷ ନାଶକ, କଫ ଦୋଷ ନାଶକ, ବାୟୁଦୋଷ ନାଶକ, ବିଷ ନାଶକ ଓ ସର୍ବରୋଗ ବିନାଶକ ରୂପେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ଏପରିକି ଧଳାଛଉ ଓ କୁଷ୍ଠରୋଗର ଘାଆଗୁଡ଼ିକର ଚିକିତ୍ସା ପାଇଁ ଏହାକୁ ବ୍ୟବହାର କରାଯାଇପାରେ ବୋଲି ସେ ସୂଚାଇଛନ୍ତି ।

ଝାଡ଼ା ହେବା ପାଇଁ ମଳଦ୍ୱାରରେ ମଲମ ଲଗାଇବା ପରେ ବି ଯେଉଁଠି ଝାଡ଼ା ହେଉ ନ ଥିଲା, ସେଠାରେ ହାତୀର ଭୟ କାମ କରିଥିବାର ଜଣାଅଛି ।[10] କୌଣସି ଉପାୟରେ ନିୟନ୍ତ୍ରଣ କରାଯାଇପାରୁ ନ ଥିବା ପାଗଳ ଲୋକଙ୍କୁ ବି ନିୟନ୍ତ୍ରଣ କରିବା ପାଇଁ ହାତୀଙ୍କ ଭୟ ଭଲ କାମ ଦେଉଥିଲା ।[11] କେରଳରେ ନିଜ ପିଲାଙ୍କୁ ନିର୍ଭୟ କରାଇବା ପାଇଁ ମା' ବାପାମାନେ ପିଲାଙ୍କୁ ହାତୀର ଗୋଡ଼ ମଝିରେ ଚଲାଇଥାନ୍ତି । ଚରକ କହିଛନ୍ତି, ହାତୀଙ୍କୁ ତାଲିମ ଦେବାରେ ଅତିରିକ୍ତ

---

[5]ଚରକ, *ବିଷଚିକିତ୍ସିତା*, XXIII, 119.

[6]ତତ୍ରୈବ, XXIII, 252.

[7]ଚରକ, *ଅର୍ଶ ଚିକିତ୍ସିତା*, XIV, 55

[8]ଶୁଶ୍ରୁତ, *ଦ୍ୱନ୍ଦ୍ୱିନିଭ ଚିକିତ୍ସିତା*, I, 88

[9]*ରାସରତ୍ନ ସମୁଚ୍ଚୟ*, III, 115, 118

[10]ଚରକ, *ସିଦ୍ଧି ସ୍ଥାନ*, 7, 34

Digitized by srujanika@gmail.com

ପରିଶ୍ରମ କଲେ ଏହା ଫୁସ୍‌ଫୁସ୍‌କୁ ପ୍ରଭାବିତ କରିଥାଏ ଓ କାଶରୋଗ ଦେଖାଦେଇଥାଏ । ଚରକ ପରାମର୍ଶ ଦେଇଛନ୍ତି ଯେ, ଅତିରିକ୍ତ କଫ ପଡ଼ିଲେ ହାତୀମଳର ପାଣିରେ ମହୁ ମିଶାଇ ରୋଗୀକୁ ଦିଆଯିବା ଉଚିତ ।

ହାତୀର ଦୁଧ ଆଖି ପାଇଁ ଏକ ପଥ୍ୟର କାମ କରିଥାଏ । ଏହା ଯଥେଷ୍ଟ ପୁଷ୍ଟିକର ବି ଅଟେ । ସଦ୍ୟ ଛୁଆ ଜନ୍ମିତାଇଥିବା ଗୋଟିଏ ହାତୀର ଦୁଧରେ ଶତକଡ଼ା 7.2 ରୁ 7.8 ଚର୍ବି, 2.8 ରୁ 3.1 ଶତାଂଶ ପୁଷ୍ଟିସାର ଓ 6.5 ରୁ 6.9 ଶତାଂଶ ଶର୍କରା (ଲାକ୍ଟୋଜ୍) ଥାଏ ।

ଗାଈ ଦୁଧ ତୁଳନାରେ ହାତୀ ଦୁଧରେ କମ୍ ପରିମାଣର ଜୀବସାର କ ଓ ଘ, ଅଧିକ ପରିମାଣର ଜୀବସାର ଖ, ଗ ଓ ପ୍ରାୟ ସମାନ ପରିମାଣର ଜୀବସାର $ଖ_2$ ରହିଥାଏ । ହାତୀ ଦୁଧରୁ ବନାଯାଇଥିବା ଘିଅର ସାପୋନିଫିକେସନ୍ ମୂଲ୍ୟ 180 ରୁ 192 ମଧ୍ୟରେ ଓ ଆୟୋଡିନ୍ ମୂଲ୍ୟ 14 ରୁ 18 ମଧ୍ୟରେ ହୋଇଥାଏ । ଏହା ପିତ୍ତନାଶକ, କଫନାଶକ, କ୍ଷୁଧାବର୍ଦ୍ଧକ ଓ କୃମିନାଶକ ଅଟେ ।

---

[11] *ଚରକ, ଉନ୍ମାଦ ଚିକିତ୍ସିତ*, 18, 20

[12] *ଚରକ, ହିକ୍କାଶ୍ୱାସ ଚିକିତ୍ସିତ*, 18, 116

Digitized by srujanika@gmail.com

# ଗ୍ରନ୍ଥସୂଚୀ


ଏଲିଫାଣ୍ଟ ଗୋଲ୍ଡ୍, ପି.ଡି. ଷ୍ଟ୍ରେସି, 1963
ଓ୍ୱେଲ୍‌ଥ୍ ଅଫ୍ ଇଣ୍ଡିଆ, ତୃତୀୟ ଭାଗ, 1952
ହରପ୍ପା, କେଦାରନାଥ ଶାସ୍ତ୍ରୀ
ରାମାୟଣ
ଚରକ ସଂହିତା
ଜଙ୍ଗଲ୍ ଜି ଓଲ୍, ସୁରେଶ ବୈଦ୍ୟ
ଶିଶୁପାଳ ବଧ, ମାଘ
ରଘୁବଂଶ, କାଳିଦାସ
ମେଘଦୂତ, କାଳିଦାସ
ବମ୍ବେ ନାଚୁରାଲ୍ ହିଷ୍ଟ୍ରି ସୋସାଇଟିର ମୁଖପତ୍ର
ଏଲିଫ୍ୟାଣ୍ଟ୍, ଏସ୍.କେ. ଏଲ୍‌ଟ୍ରିଂହାମ୍ 1982


Digitized by srujanika@gmail.com

ହାତୀ ହେଉଛି ଜଙ୍ଗଲର ମଉଡ଼ମଣି । ଏହି ଆକର୍ଷଣୀୟ ଜୀବଟି ଆମର ବିଭିନ୍ନ ପର୍ବପର୍ବାଣୀ, ଧାର୍ମିକ ଓ ଜାତୀୟ ଉତ୍ସବ ଆଦିର ଶୋଭା ବଢ଼ାଇଥାଏ । ପୋଷା ଓ ତାଲିମପ୍ରାପ୍ତ ହାତୀ ଆଶାତୀତ ବୁଦ୍ଧିମତ୍ତାର ସହ ମଣିଷର ଅନେକ କାମ ତୁଲାଇଥାନ୍ତି । ଅବଶ୍ୟ ବେଳେ ବେଳେ ବଣୁଆ ହାତୀ ସାଂଘାତିକ ସମସ୍ୟା ସୃଷ୍ଟି କରିଥାନ୍ତି । ଏହି ବହିଟି ଆମକୁ ବିଭିନ୍ନ ପ୍ରକାର ହାତୀଙ୍କ ସହିତ ପରିଚିତ କରାଇ ଦିଏ ।

*ରମେଶ ବେଦୀ* 1915 ମସିହା ଜୁନ୍ 20 ତାରିଖରେ କାଲାବାଘ୍ (ଏବେ ପାକିସ୍ଥାନରେ) ଠାରେ ଜନ୍ମ ହୋଇଥିଲେ । ସେ ଗୁରୁକୁଳ କାଙ୍ଗ୍ରୀ ୟୁନିଭରସିଟିରେ ଜଣେ ଆବାସିକ ବିଦ୍ୟାର୍ଥୀ ରୂପେ ଅଧ୍ୟୟନ କରିଥିଲେ । ସେଠାରେ ସେ ଜଙ୍ଗଲ ବୁଲିବା ଓ ବନ୍ୟ ଜନ୍ତୁଙ୍କୁ ଅନୁଧ୍ୟାନ କରିବାକୁ ଖୁବ୍ ଭଲ ପାଉଥିଲେ । ହାତୀ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । 1947 ମସିହାର ଦେଶ ବିଭାଜନ ସମୟରେ ସେ ଜଣେ ଶରଣାର୍ଥୀ ରୂପରେ ହରିଦ୍ୱାରରେ ରହିଥିଲେ । ସେଠାରେ ସେ ହାତୀମାନଙ୍କୁ ବିଭିନ୍ନ ଅବସ୍ଥାରେ ଦେଖିଥିଲେ ଓ ସେମାନଙ୍କ ଉପରେ ଅଧ୍ୟୟନ କରିଥିଲେ । ବହିଟିର ଅନୁବାଦକ ବିଜୟକୃଷ୍ଣ ପଟ୍ଟନାୟକ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ଦିଗରେ ଉଦ୍ୟମଶୀଳ । ଶିକ୍ଷା ଓ ବିଜ୍ଞାନ ସମ୍ପର୍କରେ ସେ ବହୁ ପୁସ୍ତକ ରଚନା ଓ ଅନୁବାଦ କରିଛନ୍ତି ।



ଟ. 55.00 ISBN 81-237-4579-6

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

Digitized by srujanika@gmail.com